ପରୀ ରାଇଜକୁ ଉଡ଼ିଯିବା ଆମେ
ନୂଆ ଉଡ଼ାଜାହାଜରେ ବସି
ମନ ମତାଣିଆ ଏ ଜେମ୍ସ ସଂଭାର
ମଜାରେ ଖାଇବା ହସିଖୁସି !




**ଜେମ୍ସ ସବୁରି ପ୍ରିୟ–**

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍ଡୀ

---

ଗୃହେଁ ଗୃହେଁ ସୁଖଦୁଃଖ ଭରା ବର୍ଷଟିଏ ଆସି ଶେଷ ହେଲା । ୧୯୮୩ ବିତିଯାଇ ୧୯୮୪ ଆସନ୍ନ । ସମୟ ଗତିରେ ମଣିଷ କ୍ରମେ ଅଧିକ ଉନ୍ନତ ହେବା ଆଶା କରାଯାଏ । ବର୍ଷ-ଶେଷରେ ଆମେ ପ୍ରତ୍ୟେକେ ନିଜ ନିଜକୁ ପରୀକ୍ଷା କରି ଦେଖିବା କଥା—ନ୍ୟାୟ ଓ ସତ୍ୟ ପଥରେ ଆମେ କେତେଦୂର ଅଗ୍ରସର ହୋଇଛୁଁ ?

## ଅମରବାଣୀ

ନୀଚେ ଲଲପ ତସ୍ମା ଦ୍ୱେଷ୍ଟି, ସ୍ୱଧିକୋ ନ ବିଶୁରଯେତ୍ ।
ଦର୍ପଣେ ସଙ୍କଟୋ ସ୍ୟାଲ୍‌ପେ, ଦୃଶ୍ୟତେ ଲଘୁବିଗ୍ରହଃ ।।

[ନୀଚ ଲୋକ ଯଦି ମହତ୍ ଲୋକର ଅପମାନ କରେ, ତେବେ ମହତ୍ ଲୋକ ସେଥିରେ ଦୁଃଖିତ ହେବାର କାରଣ ନାହିଁ । କାରଣ ବିଶାଳ ପର୍ବତ ମଧ୍ୟ ଛୋଟିଆ ଦର୍ପଣରେ ଛୋଟିଆ ଦେଖାଯାଏ ।]

---

ବର୍ଷ : ୧୭ ଡିସେମ୍ବର ୧୯୮୩ ଅଙ୍କ : ୬

ପ୍ରତିସଂଖ୍ୟା : ଟ. ୧-୦୦ :: ବାର୍ଷିକ ମୂଲ୍ୟ : ଟ. ୧୪-୦୦



## ଜହ୍ନମାମୁଁ ସମ୍ବାଦ



### ସୌରମଣ୍ଡଳରେ ନୂଆ ଅତିଥି

ଆକାଶ ଗ୍ରହନକ୍ଷତ୍ର ଉପରେ ଗବେଷଣା କରୁଥିବା ବୈଜ୍ଞାନିକ-ମାନେ ସନ୍ଦେହ କରୁଛନ୍ତି କି ଆମ ସୌର ମଣ୍ଡଳ ଭିତରକୁ ଛୋଟ ହେଉ ବା ବଡ଼ ହେଉ ନୂଆ ଗ୍ରହଟିଏ ପଶି ଆସିଛି । କାରଣ ନେପ୍‌ଚୁନ୍ ଓ ୟୁରାନାସ୍ ନିଜ ନିଜ ଗତି ପଥରୁ ସାମାନ୍ୟ ଏପଟ ସେପଟ ହେବାର ଜଣାପଡୁଛି । ଏହା ସେହି ନବାଗତର ପ୍ରଭାବ !

### ନୂଆ ରେକର୍ଡ



ଆମେରିକାର ଜଣେ ସାମରିକ ସାର୍ଜେଣ୍ଟ୍ ଜେମ୍‌ସ୍ ହାଚିସନ୍ ପ୍ରତି ଘଣ୍ଟାରେ ପାଞ୍ଚମିନିଟ କରି ବିଶ୍ରାମ ନେଇ ଏକ ଶହ ଛପନ ଘଣ୍ଟା କୋଡ଼ିଏ ମିନିଟ ପର୍ଯ୍ୟନ୍ତ ଏକାଦିକ୍ରମେ ବୋଲିଂ (Bolling) କରି ରେକର୍ଡ ସୃଷ୍ଟି କରିଛନ୍ତି । ପୂର୍ବ ବିଶ୍ୱ-ରେକର୍ଡ ହେଲା ଏକଶହ ପଞ୍ଚାବନ ଘଣ୍ଟା ଚାରି ମିନିଟ ।

### ଗଛ ଉପରେ ଘର



ଆର୍ଜେଣ୍ଟିନା ବ୍ୟାପି ଗତ ପ୍ରବଳ ବନ୍ୟାବେଳେ ଏକ ଦମ୍ପତି ଦୁଇମାସ କାଳ ଗୋଟିଏ ଗଛ ଉପରେ କଟାଇଲେ । ସେମାନେ ପ୍ରଶସ୍ତ ଶାଖା ଉପରେ ପଟ ପକାଇ କୁଡ଼ିଆ ବନାଇ ନେଲେ । ଗୋଟିଏ ନୌକାକୁ ଗଛରେ ବାନ୍ଧି ତହିଁରେ ଯାତାୟାତ କରୁଥାନ୍ତି । ଗଛ ଡାଳରେ ବସି ସୁରୁଖୁରୁରେ ମାଛ ବି ଧରୁଥାନ୍ତି ।

## ଜାଣନ୍ତି କି ?

୧. କାଶ୍ମୀର ନାମ କିପରି ହେଲା ?

୨. ସିଙ୍ଗାପୁରର ନାମକରଣ କିପରି ହେଲା ?

୩. ଓଡ଼ିଶାର କେଉଁ ସହରରେ ଡଚ୍, ପର୍ତ୍ତୁଗୀଜ, ଫରାସୀ ଓ ଇଂରେଜ— ଏସବୁ ବିଦେଶୀ ବଣିକଙ୍କ ସ୍ମୃତି ଅଛି ?

୪. କଳିଙ୍ଗ ଯୁଦ୍ଧର ବହୁବର୍ଷ ପରେ କେଉଁ ବିଖ୍ୟାତ ରାଜା ଓଡ଼ିଶାକୁ ନୂତନ ଜୀବନ ଦେଲେ ?

୫. ଓଡ଼ିଶାର ସର୍ବୋଚ୍ଚ ପର୍ବତର ନାମ କ'ଣ ?

(ଉତ୍ତର ପୃଷ୍ଠା ୬୪ ରୁ ପାଇବେ)




ମହାକବି ସନ୍ଦୀପନ ଥିଲେ ରାଜଦରବାରର କବି । କବି ଭାବରେ ତାଙ୍କର ସୁଖ୍ୟାତି ଚତୁର୍ଦ୍ଦିଗରେ ଏପରି ବ୍ୟାପିଥିଲା ଯେ ଲୋକେ କହୁଥିଲେ ତାଙ୍କ ମୁହଁରୁ କଥା ବାହାରିଲେ ତାହା କବିତା ଆକାରରେହିଁ ଆସେ ।

କିନ୍ତୁ ସ୍ୱଭାବରେ ସେ ଥିଲେ ଅତି ଗର୍ବୀ । ସାଧାରଣ ଲୋକ କେହି ତାଙ୍କୁ ଦେଖାକଲେ ସେ ଅପମାନିତ ବୋଧ କରନ୍ତି ।

ରାଜଧାନୀରୁ କିଛି ଦୂରରେ ଗୋଟିଏ ଗ୍ରାମରେ ବ୍ରାହ୍ମଣ ଯୁବକଟିଏ ଥାଏ । ତା' ନାମ ଭୂଷଣ । ସେ ଥିଲା ସନ୍ଦୀପନଙ୍କର ଜଣେ ବଡ଼ ପ୍ରଶଂସକ । ଦିନେ ଏ ଲୋକ ଅପବାଦର ସତ୍ୟତା ବୁଝିବା ସକାଶେ ସେ ରାଜଧାନୀକୁ ଗଲା ।

ଭୂଷଣ ଯାଇ କବିଙ୍କ ଘରେ ପହଞ୍ଚିଲା । କିନ୍ତୁ ଚାକର ଆସି ବାହାରେ କହିଦେଇ ଗଲା କି କବି ଘରେ ନାହାନ୍ତି ଯଦିଓ କବି ଘରେହିଁ ଥା'ନ୍ତି । ଦ୍ୱିତୀୟ ଦିନ କବି ମନା କଲେ ତାହାକୁ ସେ ଦେଖା କରିବାକୁ ଚାହାନ୍ତି ନାହିଁ । ତୃତୀୟ ଦିନ ତା'କୁ କୁହାଗଲା କି ସେ କବିତାପାଠ କରୁଛନ୍ତି ଦେଖାହୋଇ ପାରିବ ନାହିଁ । ଶେଷରେ ଚତୁର୍ଥଦିନରେ ସେ କବିଙ୍କ ଦର୍ଶନ ପାଇଲା ।

କବି ଘର ଭିତରୁ ବାହାରି ଆସି ମୁହଁ ଛୁଞ୍ଚାଡ଼ି କହିଲେ, "ତୁମମାନଙ୍କ ପରି ଲୋକଙ୍କ ସହିତ ମୁଁ କଥାବାର୍ତ୍ତା କରିବାକୁ ସମୟ ନାହିଁ । ଶିଘ୍ର କୁହ ତୁମର କ'ଣ ଦରକାର ?"

"ଆପଣଙ୍କ କବିତା ମୋତେ ଖୁବ୍ ପ୍ରଭାବିତ କରିଛି । ଆପଣଙ୍କ ଦର୍ଶନ ପାଇବା ପାଇଁ ମୁଁ ବର୍ଷ ସାରା ପଇସା ରଖି ରଖି ଏବେ ସେଥିରେ ରାସ୍ତାଖର୍ଚ୍ଚ କରି ଆସିଛି ।" ଭୂଷଣ ବଡ଼ ଶ୍ରଦ୍ଧା ଓ ଆଦରର ସହିତ କହିଲା ।

"ବସୁନ୍ଧର"



ସନ୍ଦୀପନ ମୁହଁ ଫୁଲାଇ କହିଲେ, "ଏଇ ସବୁ ବାଜେ କଥା ପାଇଁ ମୋର ସମୟ ନାହିଁ, ତମେ ଏବେ ଯାଇପାର ।"

ଭୂଷଣ ନିରାଶ, ଉଦାସ ଓ ଅପମାନିତ ହୋଇ ସେଠାରୁ ଫେରିଲା ।

କିଛିଦିନ ପରେ ଖବର ଆସିଲା ସନ୍ଦୀପନଙ୍କ ବଡ଼ ଭାଇ ଗ୍ରାମରେ ବେମାର ହୋଇ ପଡ଼ିଛନ୍ତି । ସେ ରାଜାଙ୍କୁ ଏକଥା କହି ଗୋଟିଏ ଘୋଡ଼ାଗାଡ଼ି ମଗାଇ ଗ୍ରାମକୁ ଗଲେ । କିଛିଦୂର ଯିବା ପରେ ଘୋଡ଼ାଟି ଅଚେତନ୍ୟ ପଡ଼ିଗଲା । ଗାଡ଼ିବାଲା ଗାଡ଼ିରୁ ଓହ୍ଲାଇ ଘୋଡ଼ାକୁ ଉଠାଇଲା ଓ କହିଲା, "କ୍ଷମା କରିବେ ମହାଶୟ, ଏ ଘୋଡ଼ା ସୁସ୍ଥ ହେବାକୁ ସମୟ ଲାଗିବ । ଆପଣ ଦୂରରେ ଦିଶୁଥିବା ପାନ୍ଥନିବାସରେ ଟିକିଏ ଅପେକ୍ଷା କରନ୍ତୁ ମୁଁ କିଛି ସମୟ ପରେ ଘୋଡ଼ା ନେଇ ଆସିବି ।"

ନିରୁପାୟ ହୋଇ ସନ୍ଦୀପନ ଚାଲି ଚାଲି ସେଠାକୁ ଗଲେ । ସ୍ଥାନଟି ବେଶ୍ କିଛି ଦୂରରେ ଥିଲା; କବି ଚାଲି ଚାଲି ଧୂଳିଆ ଧୂସରିତ ହୋଇ କ୍ଳାନ୍ତ ହୋଇ ସେଠାରେ ପହଞ୍ଚିଲେ । ସେ ସ୍ଥାନର ମାଲିକ କବିଙ୍କ ଚେହେରା ଦେଖି କହିଲେ, "ଏଠାରେ ସ୍ଥାନର ଅଭାବ, ଯଦି ଦରକାର ବାରଣ୍ଡାରେ ସପ ପକାଇ ବିଶ୍ରାମ କରନ୍ତୁ ।"

ସନ୍ଦୀପନ ଖୁବ୍ ଅପମାନିତ ବୋଧ କଲେ ଓ ରାଗରେ କହିଲେ, "ତମେ ବୋଧହୁଏ ଜାଣନାହିଁ କାହା ସହିତ କଥା କହୁଛ ? ମୁଁ ହେଉଛି ରାଜକବି ସନ୍ଦୀପନ । ତମେ କହୁଛ ମୁଁ ବାରଣ୍ଡାରେ ବିଶ୍ରାମ କରିବି ? ଶୀଘ୍ର ମୋ ପାଇଁ ବଖରାଟିଏ ଖାଲି କରିଦିଅ ।"

ସନ୍ଦୀପନଙ୍କ କଥା ଶୁଣି ସେ ହୋ ହୋ ହୋଇ ହସି ଉଠିଲା । ସନ୍ଦୀପନ ଆହୁରି ରାଗିଯାଇ କହିଲେ, "ହସୁଛ କାହିଁକି ? ତମେ କ'ଣ ମୋ ନାମ ଶୁଣିନାହିଁ ?"

"ମୁଁ ତୁମ କଥା ବହୁତ ଶୁଣିଛି ସେଥିପାଇଁ ତ ହସୁଛି । ଦୁର୍ଭାଗ୍ୟ ହେଉ ବା ସୌଭାଗ୍ୟ ହେଉ ମହାକବି ସନ୍ଦୀପନ ଆଜି ତୁମ ଆଗରୁ ଆସି ଏଠାରେ ରହିଛନ୍ତି । ନହେଲେ ତୁମ ମିଛକଥାରେ ମୁଁ ବିଶ୍ୱାସ କରିଥା'ନ୍ତି ।"

ପାନ୍ଥନିବାସର ମାଲିକ ସନ୍ଦେହ ପ୍ରକାଶ କରି କହିଲା ।

ଏକଥା ଶୁଣି ସନ୍ଦୀପନ ଭାବିଲେ କୌଣସି ବ୍ୟକ୍ତି ତାଙ୍କ ନାମ କହି ଲୋକମାନଙ୍କୁ ଠକଉଛି । ତେଣୁ ସେ କୌତୁହଳୀ ହୋଇ ପଚାରିଲେ, "ଅନ୍ୟ ସନ୍ଦୀପନଟି କିଏ ମୋତେ ଟିକିଏ ଦେଖାଅ ତ ?"

"ଏଇ ପାଖ ପ୍ରକୋଷ୍ଠରେ ସେ ରହୁଛନ୍ତି ଓ ବର୍ତ୍ତମାନ ସାହିତ୍ୟପ୍ରେମୀମାନଙ୍କୁ ନେଇ ସାହିତ୍ୟଚର୍ଚ୍ଚା କରୁଛନ୍ତି । ତମେ ଯଦି ମହାକବିଙ୍କୁ ଦେଖିବାକୁ ଚାହଁ ତ ଚୁପ୍‌ଚାପ୍ ଯାଇ ଦେଖିଆସ; ଗୋଳମାଳ କରନାହିଁ ନହେଲେ ତୁମକୁହିଁ ସମସ୍ତେ ଧରିବେ ।" ପାନ୍ଥନିବାସର ମାଲିକ କହିଲା ।

ସନ୍ଦୀପନ ଚୁପ୍‌ଚାପ୍ ଯାଇ ବାହାର ପଟରୁ ଝରକା ଭିତର ଦେଇ ଦେଖିଲେ ଜଣେ ଯୁବକ ତାଙ୍କର ପରି ପୋଷାକ ପିନ୍ଧି ବଡ଼ ମଧୁର ଭାବରେ ତାଙ୍କରି କବିତା ସବୁ ଆବୃତ୍ତି କରୁଛି ଓ ସେସବୁକୁ ସହଜ ଭାବରେ ବୁଝାଇ ଦେଉଛି । ବହୁତ ଲୋକ ସପ୍ରଶଂସ ଦୃଷ୍ଟିରେ ତାକୁ ଦେଖୁଛନ୍ତି । ସେ ମଧ୍ୟ ଅତ୍ୟନ୍ତ ନମ୍ର ଭାବରେ ସେମାନଙ୍କ ପ୍ରଶ୍ନର ଉତ୍ତର ଦେଉଛି ।

ବହୁତ ସମୟ ଧରି ଦେଖିବାରୁ ସେ ବୁଝି-ପାରିଲେ କି କିଛିଦିନ ପୂର୍ବରୁ ଭୂଷଣ ନାମକ ଯେଉଁ ଯୁବକଟି ତାଙ୍କ ଘରକୁ ଆସିଥିଲା ଇଏ ସେଇ । ସନ୍ଦୀପନ ଖୁବ୍ ରାଗିଗଲେ । ସେ ଦେଖିଲେ କ୍ରମେ କବିତା ସଭା ଶେଷ ହେଲା ଓ କବିତାପ୍ରେମୀମାନେ ସେହି ଯୁବକକୁ ଅତ୍ୟନ୍ତ ଶ୍ରଦ୍ଧା ଓ ସମ୍ମାନ ଦେଖାଇ ବିଦାୟ ନେଲେ । ସନ୍ଦୀପନ ମନେ ମନେ ରାଗରେ ନିଆଁ ହୋଇ ଗଲେଣି । ସେ ପ୍ରକୋଷ୍ଠ ମଧ୍ୟକୁ ପ୍ରବେଶ କରି କହିଲେ, "ତୁମେ ମୋ ପୋଷାକରେ ମୋ ନାମରେ ଓ ମୋ କବିତାକୁ ନେଇ ଲୋକଙ୍କୁ ଠକୁଛ ? ତୁମର ଏଇ ଅପରାଧ ପାଇଁ ରାଜାଙ୍କୁ କହି ତୁମକୁ କଠିନ ଦଣ୍ଡ ଦିଆଇବି ।"



ଭୂଷଣ ମହାକବିଙ୍କୁ ଏପରି ଧୂଳିମଳି ଅବସ୍ଥାରେ ଦେଖି ପ୍ରଥମେ ଆଶ୍ଚର୍ଯ୍ୟ ହେଲା ଓ ପରେ ଭକ୍ତିର ସହିତ ପ୍ରଣାମ କଲା । ତା'ପରେ

ଅତ୍ୟନ୍ତ ନମ୍ରତା ସହକାରେ କହିଲା, "ମୋର ଏ ବ୍ୟବହାର ଦେଖି ଆପଣ ଆଶ୍ଚର୍ଯ୍ୟ ହେବା ସ୍ୱଭାବିକ୍ । ମୁଁ ଏପରି କରିଛି ବୋଲି ମୋତେ କ୍ଷମା କରନ୍ତୁ । କିନ୍ତୁ ଏହାର ପଶ୍ଚାତରେ ମୋର କୌଣସି ମନ୍ଦ ଉଦ୍ଦେଶ୍ୟ ନାହିଁ । ମୋ କଥା ଶାନ୍ତପୂର୍ବକ ଶୁଣନ୍ତୁ ଯଦି କିଛି ଦୋଷ ଦେଖିବେ ତେବେ ମୋତେ ଦଣ୍ଡ ଦେବେ ।

ମୁଁ ଆପଣଙ୍କ ସହିତ ଦେଖା କରିବା ପରେହିଁ ଏପରି କରିବା ପାଇଁ ମନସ୍ଥ କଲି । ଆପଣଙ୍କର ନିନ୍ଦା ମୁଁ ଶୁଣି ଦେଖା କରିବାକୁ ଗଲି ଏବଂ ଉପଲବ୍ଧି କଲି ଯେ ଲୋକମାନେ ଯାହା କହୁଛନ୍ତି ସବୁ ସତ୍ୟ । ଏକଦିଗରେ ଆପଣଙ୍କ କବିତାର ଭୂରି ଭୂରି ପ୍ରଶଂସା ଓ ଅନ୍ୟ ଦିଗରେ ଆପଣଙ୍କ କ୍ରୋଧ, କଠୋରତା ଓ ଅହଂକାରର ନିନ୍ଦା ଦୁଇଟି ମୁଁ ଶୁଣିଲି । ମୁଁ ଆପଣଙ୍କ କବିତାର ଅନୁରାଗୀ ବୋଲି ଏପରି କଲି । ଲୋକମାନଙ୍କ ମନରେ ଆପଣଙ୍କ ପ୍ରତି ଆଦରଭାବ ଉତ୍ପନ୍ନ କରିବା ପାଇଁ କେବଳ ମୁଁ ଆପଣଙ୍କ ଭୂମିକାରେ ଅଭିନୟ କରିଥିଲି । ମୁଁ ଲୋକମାନଙ୍କୁ ଆପଣଙ୍କ କବିତା ଶୁଣାଉଛି ଏବଂ ବିନୟତାପୂର୍ବକ ସେମାନଙ୍କୁ ବୁଝାଉଛି ଓ ପ୍ରଶ୍ନୋତ୍ତର କରୁଛି । ଯେଉଁ ଗୁଣ ଆପଣଙ୍କ ଭିତରେ ନାହିଁ ସେଗୁଡିକହିଁ ମୁଁ ଅଭିନୟ କରିବା ଦ୍ୱାରା ଆପଣଙ୍କ ଯଶ ଗୃହଆଡ଼େ ବ୍ୟାପି ଯାଉଛି । ଆପଣଙ୍କୁ ଦର୍ଶନ ନ କରିଥିବା ଲୋକଙ୍କ ମନରେ ଆପଣଙ୍କ ବିଷୟରେ ଆଙ୍କି ହୋଇଥିବା ଛବି ସୁନ୍ଦର ଓ ଚିର-ଜାଜ୍ୱଲ୍ୟମାନ ହୋଇ ରହିବ । ମୁଁ ନିଜେ ଏକଥା ଦେଖି ମଧ୍ୟ ଖୁବ୍ ଖୁସି ହୋଇଛି ।

ଏପରି ଏକ ଶୁଭେଚ୍ଛୁ ଲୋକ ଦେଖି ସନ୍ଦୀପନଙ୍କ ହୃଦୟ ତରଳି ଗଲା । ସେ ମୁଗ୍ଧ ହୋଇ କହିଲେ, "ତମେ କେବଳ ମୋର ପ୍ରଶଂସକ ନୁହଁ ମାର୍ଗଦର୍ଶକ ମଧ୍ୟ । ମୁଁ ଯେ ତମକୁ ଚିହ୍ନିବାରେ ଭୁଲ କରିଥିଲି ସେଥିପାଇଁ ଅତ୍ୟନ୍ତ ଲଜ୍ଜିତ ତମେ ମୋ ଆଖି ଖୋଲି ଦେଇଛ । ଆଉ ଏ ନାଟକ କରିବାକୁ ପଡ଼ିବ ନାହିଁ ।"






[ ୬ ]

[ପଦ୍ମପାଦ ଏବଂ ପିଙ୍ଗଳ ଭଲ୍ଲୁକ ପର୍ବତ ଘାଟି ଭିତରେ ବହମାନ ନଦୀ ତୀରରେ ଅସି ପହଞ୍ଚିଗଲେ । ନଦୀ ଶୁଖାଇବା ନିମନ୍ତେ ପଦ୍ମପାଦ ଧ୍ୟାନସ୍ଥ ହେଲେ ଏବଂ ଜପ କରିବାକୁ ଲାଗିଲେ । ପିଙ୍ଗଳ ଗଦା ହସ୍ତେ ତାଙ୍କୁ ପୈଶାଚିକ ଶକ୍ତିମାନଙ୍କ କବଳରୁ ରକ୍ଷା କଲେ । କ୍ରମେ ନଦୀ ଜଳ ଶୁଖିଗଲା । ନଦୀ ଭିତରୁ ଦେଖାଗଲା ମନ୍ଦିରର ଚୂଡ଼ା । ତାପରେ—]

ଧ୍ୟାନ ଛୁଟିବାରୁ 'ପଦ୍ମପାଦ ମନ୍ଦିର ଆଡ଼େ ଦୃଷ୍ଟିପାତ କଲେ । ମନ୍ଦିରର ଗୋଟିଏ କଡ଼ରେ ମହାମାୟୀଙ୍କର ଦୁଇଜଣ ଶିଷ୍ୟ ଠିଆ ରହିଥିଲେ । ପଦ୍ମପାଦ ସେ ଦୁହିଁଙ୍କୁ ପାଖକୁ ଆସିବାକୁ ସଙ୍କେତ ଦେଲେ । ସେମାନେ ଧିରେ ଧିରେ ପଦ୍ମପାଦଙ୍କ ପାଖକୁ ଆସିଲେ ଓ ତାଙ୍କୁ ପ୍ରଣାମ କଲେ ।

"ତମେ ଦୁହେଁ ମୋର ନିର୍ଦ୍ଦେଶ ପାଳନ କରିଛ । ସେଥିପାଇଁ ମୁଁ ବହୁତ ପ୍ରସନ୍ନ । ଏଣିକି ଯୁଆଡ଼େ ଇଚ୍ଛା ଯାଅ ।" ପଦ୍ମପାଦ କହିଲେ ।

ମହାମାୟୀଙ୍କ ଶିଷ୍ୟ ଦୁଇଜଣ ପରସ୍ପର ଅନାଇଲେ । ତା'ପରେ ସେ ଦୁହିଁଙ୍କ ଭିତରୁ ଜଣେ କହିଲେ, "ହେ ମହାତାନ୍ତ୍ରିକ । ଆପଣଙ୍କ ନିର୍ଦ୍ଦେଶ ଆମେ ଯଥାସାଧ୍ୟ ପାଳନ




କରୁଛୁଁ । ଏଥର ଆମକୁ ମନ୍ତ୍ରର ପ୍ରଭାବରୁ ମୁକ୍ତ କରନ୍ତୁ ।"

ପଦ୍ମପାଦ ହସି ହସି କହିଲେ, "ଯେ ପର୍ଯ୍ୟନ୍ତ ମୋ କାମ ପୂରା ନ ହୋଇଛି, ସେ ପର୍ଯ୍ୟନ୍ତ ତମ ଦୁହିଁଙ୍କୁ ମୁକ୍ତ ଦେବାର ପ୍ରଶ୍ନ ଉଠୁନାହିଁ। ମୁଁ ଜାଣେ, ତମେମାନେ ସାଧାରଣ ପ୍ରେତ ପିଶାଚ ନୁହଁ । ତୁମ ଗୁରୁଙ୍କ ସମାଧିରୁ ଆମର କେତେକ ସାମଗ୍ରୀ ଲୋଡ଼ା । ସେସବୁ ସଂଗ୍ରହ ହୋଇ ସାରିବା ମାତ୍ରେ ତମେମାନେ ମୁକ୍ତ ପାଇଯିବ ।"

ମହାମାୟୁଙ୍କର ଦୁଇ ଶିଷ୍ୟଙ୍କ ଚେହେରା ଫିକା ପଡ଼ିଗଲା । ସେମାନେ ପୁଣି ପଦ୍ମପାଦଙ୍କୁ ପ୍ରଣାମ କରି କାନ୍ଦ କାନ୍ଦ ହୋଇ କହିଲେ, "ମହାଶୟ, ଆମେ ଦୁହେଁ ଆପଣଙ୍କ ଦାସାନୁଦାସ । ଯେତେବେଳଠୁଁ ଆପଣ ଆମକୁ ମନ୍ତ୍ର ଦ୍ୱାରା ବଶ କଲେଣି, ସେତେବେଳଠୁଁ ଆମକୁ ମୁଠିଏ ଦାନା ମିଳିନାହିଁ । ଆମେ ବଡ଼ କଷ୍ଟ ପାଇଲୁଣି ।"

ସେ ଦୁଇଜଣଙ୍କ ଅବସ୍ଥା ଦେଖି ପିଙ୍ଗଳ ମନରେ ଦୟାର ଉଦ୍ରେକ ହେଲା । ସେ କିଛି କହିବାକୁ ଯାଉଛି, ପଦ୍ମପାଦ ସେ ଦୁହିଁଙ୍କୁ କହିଲେ, "ମୁଁ ତମେ ଦୁହେଁ ଭୋଗିଲ ଥିବା କଥା ଜାଣେ । କିନ୍ତୁ ତମକୁ ମନ୍ତ୍ରର ପ୍ରଭାବରୁ ମୁକ୍ତ ଦେବା ମାତ୍ରେ ତମେ ଦୁହେଁ ଆମକୁହିଁ ପ୍ରଥମେ ଖାଇ ପକାଇବ, ସେକଥା ମଧ୍ୟ ମୋତେ ଜଣା ଅଛି ।"

"ଆପଣଙ୍କ ଭଳି ମହାତାନ୍ତ୍ରିକଙ୍କର ଆମେ କି କ୍ଷତି କରିପାରିବୁଁ ?" ଦୁହେଁ ବଡ ଡର କରି କହିଲେ ।

ପଦ୍ମପାଦ ପିଙ୍ଗଳ ହାତରୁ ଗଦା ନେଇ ହସି ହସି କହିଲେ, "ଆଚ୍ଛା, ତମେ ମଣିଷକୁ ଛାଡ଼ି ଆଉ ଯେ କୌଣସି ପ୍ରାଣୀକୁ ଖାଇ କ୍ଷୁଧା ନିବାରଣ କରିପାର । ସେଥିପାଇଁ ତୁମକୁ କୌଣସି ଏକ ପ୍ରାଣୀ ବନାଇଦେବା । କି ପ୍ରାଣୀ ହେବାକୁ ଚାହୁଁଛ କୁହ ।" ପିଙ୍ଗଳ ସେମାନଙ୍କ ତରଫରୁ କହିଲା, "ଏ ଦୁହିଁଙ୍କୁ ହାତୀ ବନାଇ ଦିଅନ୍ତୁ ଆଜ୍ଞା; ତାହାହେଲେ ଆରାମରେ ବଣଯାକ ବୁଲି ଯେତେ ମନ ଗଛଲତା ଖାଇବେ ।"



"ନାହିଁ, ନାହିଁ!" ଦୁଇଜଣଯାକ ଚିତ୍କାର କରି କହିଲେ, "ନିରାମିଷ ଭୋଜନ ଆମ ଦେହ ପାଇଁ ବିଷ ସଦୃଶ। ଆମକୁ ମାଂସ ଖାଇବାକୁ ପଡ଼ିବ।"

"ଠିକ୍ ଅଛି। ତମ ଦୁହିଁଙ୍କୁ ବାଘ ସିଂହ ବନାଇ ଦେଉଛି।" ଏହା କହି ପଦ୍ମପାଦ ଜଣକ ମୁଣ୍ଡରେ ଗଦା ଛୁଆଇଁ ଦେଲେ। ସେ ଚାହିଁ ଚାହିଁ ସିଂହ ବନିଗଲା। ତା'ପରେ ସେ ଅନ୍ୟ ଜଣକ ମୁଣ୍ଡରେ ଗଦା ଛୁଆଇଁ ଦେବା ମାତ୍ରେ ସେ ବାଘ ବନିଗଲା।

ବାଘ ସିଂହ ଦୁହିଁଙ୍କ ପିଠିରେ ହାତ ବୁଲାଇ ଦେଇ ପଦ୍ମପାଦ ପୂର୍ବଦିଗକୁ ସଙ୍କେତ କରି କହିଲେ, "ତମେ ଦୁହେଁ ସେପଟେ ବଣ ଭିତରକୁ ଚାଲିଯାଅ। ଆହାର ଅଭାବ ହେବ ନାହିଁ।"

ଦୁଇ ନୂତନ ପଶୁ ଭୀଷଣ ଗର୍ଜନ ଛାଡ଼ି ପୂର୍ବଦିଗ ଅଭିମୁଖେ ଦୌଡ଼ି ଦୌଡ଼ି ଚାଲିଗଲେ।

"ଏ ଦୁହେଁ ଆମର କିଛି କ୍ଷତି କରିପାରିବେ ନାହିଁ ତ?" ପିଙ୍ଗଳ ପଦ୍ମପାଦ ଆଡ଼େ ଅନାଇ ସନ୍ଦେହପୂର୍ଣ୍ଣ କଣ୍ଠରେ ପଚାରିଲା।

"ଏ ଦୁହେଁ କୌଣସି ମଣିଷର କ୍ଷତି କରିପାରିବେ ନାହିଁ। ତା'ଛଡ଼ା ଦୁହେଁ ଏପର୍ଯ୍ୟନ୍ତ ମୋ ମନ୍ତ୍ରର ପ୍ରଭାବରେ ରହିଛନ୍ତି। ତେଣୁ ଭୟର କାରଣ ନାହିଁ।" ପଦ୍ମପାଦ କିଛି ସମୟ ପର୍ଯ୍ୟନ୍ତ ବଣ ଭିତରକୁ ପଶି-ଯାଉଥିବା ସେ ଦୁଇ ପଶୁଙ୍କୁ ଅନାଇ ରହି ତା'ପରେ କହିଲେ, "ପିଙ୍ଗଳ, ଆମେ ଆମ ଲକ୍ଷ୍ୟ ହାସଲ ଦିଗରେ ଯେତିକି ଅଧିକ ଅଗ୍ରସର ହେଉଥିବା, ଆମକୁ ସେତିକି ଅଧିକ ସତର୍କ ରହିବାକୁ ପଡ଼ିବ। ଆମ କାର୍ଯ୍ୟ ସଫଳ କରିବା ସଙ୍ଗେ ସଙ୍ଗେ ଆମକୁ ପ୍ରାଣରୁ ମାରିଦେବା ନିମନ୍ତେ ଆମର ଶତ୍ରୁମାନେ ଛକି ରହିଛନ୍ତି। ଏ ପର୍ଯ୍ୟନ୍ତ ସବୁ କାମ ସହଜରେ ହୋଇଛି ସିନା, ଭବିଷ୍ୟତ କିନ୍ତୁ ବହୁତ କଠିନ ପରୀକ୍ଷାର ସମୟ। ସାହସ ଓ ସତର୍କତା— ଏ ଦୁଇ ବନ୍ଧୁହିଁ ମନ୍ଦିରରେ ପହଞ୍ଚିବା ଦିଗରେ ଆମର ସହାୟତା କରିପାରିବେ। ଯଦି ଭୟର ସାମାନ୍ୟ ଆଭାସ ଆମ ଭିତରେ ଦେଖାଦେବ,



ତେବେ ଆମର ମୃତ୍ୟୁ ନିଶ୍ଚିତ। କିନ୍ତୁ ଆମେ ଯଦି ନିର୍ଭୟରେ ଆମ କାର୍ଯ୍ୟରେ ଅଗ୍ରସର ହେବା, ତେବେ ଶତ୍ରୁ ଯେତେ ଚତୁର ହେଉ ନା କାହିଁକି, ଆମର କୌଣସି କ୍ଷତି କରିପାରିବ ନାହିଁ। ଚାଲ, ଅତି ସାବଧାନ ହୋଇ ଆମେ ଆମ ଅଭିଯାନର ନୂତନ ପର୍ଯ୍ୟାୟ ଆରମ୍ଭ କରିବା।"

ଦୁହେଁ କେଇ ପାଦ ଆଗକୁ ଯିବା ପରେ ପଦ୍ମପାଦ ପଚାରିଲେ, "ଆଚ୍ଛା, ଭଙ୍ଗା ମନ୍ଦିରର ଶିଖର ଦେଶ ତମେ ଦେଖି ପାରୁଛ କି?"

ପିଙ୍ଗଳ ମୁଣ୍ଡ ହଲାଇ କହିଲା, "ହଁ।"

"ଭଲ କଥା। ସେ ମନ୍ଦିର ଭିତରେ ଥିବା ମହାମାୟାଙ୍କ ସମାଧିରେ ତମକୁ ଏକା ଯାଇ ପହଞ୍ଚିବାକୁ ପଡ଼ିବ। ସେଥିପାଇଁ ଛଅଗୋଟି ଦ୍ୱାର ତମେ ଅତିକ୍ରମ କରିବା ଦରକାର। ପ୍ରତି ଦ୍ୱାରକୁ ଜଗିଛନ୍ତି ଗୋଟାଏ ଗୋଟାଏ ଭୀଷଣ ରାକ୍ଷସ। ସେମାନେ ତମକୁ ମାରି ଦେବାକୁ ଚେଷ୍ଟା କରିବେ। ତମର ନିର୍ଭୟତା ହିଁ ହେବ ତମର ଏକମାତ୍ର ରକ୍ଷାକବଚ। ଥରେ ଯଦି ତମେ ଡରିଯିବ, ତେବେ ଆମର ଲକ୍ଷ୍ୟ ତ ବ୍ୟର୍ଥ ହେବ, ସଙ୍ଗେ ସଙ୍ଗେ ଆମର ପ୍ରାଣ ବି ଯିବ।" ପଦ୍ମପାଦ କହିଲେ।

ପିଙ୍ଗଳଙ୍କ ଦୃଷ୍ଟି ମନ୍ଦିରର ଶିଖର ଦେଶରେ ନିବଦ୍ଧ ଥିଲା। କିନ୍ତୁ ସେ ଗଭୀର ମନଯୋଗ ସହକାରେ ପଦ୍ମପାଦଙ୍କ କଥା ଶୁଣୁଥିଲେ।

ପଦ୍ମପାଦ ପୁଣି କହିଲେ, "ପିଙ୍ଗଳ! ଆମେ ଯାଇ ମନ୍ଦିର ପାଖରେ ପହଞ୍ଚିବା ମାତ୍ରେ ତମକୁ ଛାଡ଼ି ମୁଁ ଅଲଗା ହୋଇଯିବି। ତମେ ଯଦି ମନ୍ଦିରର ପ୍ରଥମ ଦ୍ୱାରଟି ଖୋଲିଦେବ, ତେବେ ବାକି ଦ୍ୱାର ସବୁ ଖୋଲିବା ସହଜ ହୋଇଯିବ। ତମେ ମହାମାୟାଙ୍କ ସମାଧି ପାଖରେ ପହଞ୍ଚିଯିବ।"

ପଦ୍ମପାଦ ଓ ପିଙ୍ଗଳ ଯାଇ ମନ୍ଦିର ପାଖରେ ପହଞ୍ଚିଲେ।

ମନ୍ଦିରର ପ୍ରଥମ ଦ୍ୱାର ଆଡ଼େ ଅନାଇ ପିଙ୍ଗଳ ସ୍ତବ୍ଧ ହୋଇ ଠିଆ ହେଲା। ସେ ଦ୍ୱାର ଦିଶୁଥିଲା ଭୟଙ୍କର। କବାଟ ଉପରେ ଭୟଙ୍କର ମୂର୍ତ୍ତି ଖୋଦାଇ ହୋଇଥିଲା। କବାଟ ଦେହରେ ଗୁଡ଼ାଇ ହୋଇ ରହିଥିଲା ଗୋଟାଏ ବିଶାଳ ନାଗ।




ପଦ୍ମପାଦ ସେ ସାପ ଆଡ଼େ ପିଙ୍ଗଳର ଦୃଷ୍ଟି ଆକର୍ଷଣ କରି କହିଲେ, "ପିଙ୍ଗଳ, ତମେ ଭୟ ନକରି ଏ ସାପକୁ ଦୁଇଥର ଛୁଇଁଦିଅ। ଦ୍ୱାର ସେପଟରୁ କୌଣସି ଭୟଙ୍କର ଆକୃତି ତମକୁ କିଛି ପ୍ରଶ୍ନ ପଚାରିବ। ନିର୍ଭୟରେ ତମେ ତା'ର ଉତ୍ତର ଦେବ! ତୁମେ ତୁମ ପରିଚୟ ଦେବା ମାତ୍ରେ ଦ୍ୱାର ଖୋଲିଯିବ।"

ପଦ୍ମପାଦ ନୀରବ ହେଲେ।

"ତାପରେ ମୋତେ କ'ଣ କରିବାକୁ ପଡ଼ିବ?" ପିଙ୍ଗଳ ଉତ୍ସୁକ ହୋଇ ପଚାରିଲେ।

"ପିଙ୍ଗଳ! ତା'ପରେ କ'ଣ ହେବ, ସେକଥା ଯଦି ମୁଁ କହିବି, ତେବେ ମୋ ମନ୍ତ୍ରଶକ୍ତି ପୂରାପୂରି ନଷ୍ଟ ହୋଇଯିବ। ତମେ ନିଜେ ନିଜ ବୁଦ୍ଧି ଦ୍ୱାରା ପରିଚାଳିତ ହୋଇ ଯାହା କରିବାର କରିବ। ଖାଲି ସେଇ ଗୋଟାଏ କଥା ମନେ ରଖ : କଦାପି ଭୟଭୀତ ହେବ ନାହିଁ। ମହାମାୟାର ସମାଧି ପାଖରେ ଯାଇ କ'ଣ କରିବାକୁ ହେବ, ସେକଥା ଅବଶ୍ୟ ତମେ ଜାଣ।" ପଦ୍ମପାଦ କହିଲେ।

ପିଙ୍ଗଳ ଦମ୍ଭପୂର୍ଣ୍ଣ କଣ୍ଠରେ କହିଲା, "ପଦ୍ମପାଦ! କୌଣସି ଭୟଙ୍କର ଚେହେରା ଦେଖି ଡରିଯିବା ମଣିଷ ମୁଁ ନୁହେଁ। କିନ୍ତୁ ଛଳ କପଟ କରୁଥିବା ଶକ୍ତି କେହି ଏଠାରେ ନାହାନ୍ତି ତ?"

"ଛଳ କପଟ ବିନା ମଧ୍ୟ ଆମର ଅନିଷ୍ଟ କରିଭଳି ଶକ୍ତି ବହୁତ ଅଛନ୍ତି। ତେବେ ଯାହା କହିଲି, ସାହସହିଁ ଏକମାତ୍ର ଭରସା। ଯଦି ଥରେ ତୁମେ ମହାମାୟାଙ୍କ ସମାଧି ପାଖରୁ ଆମ ଇପ୍‌ସିତ ବସ୍ତୁ ନେଇ ଆସି ପାରିବ, ତେବେ ପୃଥିବୀରେ ତମେ ସବୁଠାରୁ ବଳ ଧନୀ ଓ କ୍ଷମତାବାନ୍ ହୋଇ ପାରିବ। ତୁମର ଯାହା ଇଚ୍ଛା, ତାହା କରିପାରିବ। ସବୁ କାମନା ପୂର୍ଣ୍ଣ ହୋଇଯିବ। ଦୁନିଆକୁ ତମ ହାତମୁଠାରେ ରଖିପାରିବ। ଆଜି ସେହି ଅପୂର୍ବ ସୁଯୋଗ ଆମ ପାଖକୁ ଆସିଛି।" ପିଙ୍ଗଳକୁ ଉତ୍ସାହ ଦେଇ ପଦ୍ମପାଦ କହିଲା।

"ମୁଁ ସମସ୍ତ ବାଧାବିଘ୍ନ ଆଗରେ ଅବିଚଳିତ ରହିବାକୁ ପ୍ରସ୍ତୁତ।" ପିଙ୍ଗଳ ଦୃପ୍ତ କଣ୍ଠରେ ଏହା କହି ମନ୍ଦିରର ଦ୍ୱାର ଆଡ଼େ ଅଗ୍ରସର ହେଲା।




ପଦ୍ମପାଦ ପଛକୁ ହଟି ଆସିଲେ ।

ପିଙ୍ଗଳ ଦ୍ୱାର ପାଖରେ ପହଞ୍ଚି ସେ ଭୀଷଣ ସାପକୁ ଦୁଇଥର ଛୁଇଁଦେଲା । ସେଯାଏ ଫଣା ଟେକି ଗର୍ଜନ କରୁଥିବା ସେ ସାପ ସଙ୍ଗେ ସଙ୍ଗେ ଚୁପ୍ ହୋଇଗଲା ଓ ଫଣା ପ୍ରତ୍ୟାହାର କଲା । କିନ୍ତୁ ସଙ୍ଗେ ସଙ୍ଗେ କବାଟ ସେପାଖରୁ ଶୁଭିଲା କର୍କଶ କଣ୍ଠରେ କାହାର ପ୍ରଶ୍ନ: "ମହାମାୟୀଙ୍କ ସମାଧିର ପ୍ରଥମ ଦ୍ୱାର ପର୍ଯ୍ୟନ୍ତ ଆସିଯିବା ଏ ଲୋକ କିଏ? ଏହାର ପରିଣତି କେଡ଼େ ଭୟାବହ ସେକଥା ଜଣା ଅଛି?"

ବିନା ସଙ୍କୋଚରେ ପିଙ୍ଗଳ ଉତ୍ତର ଦେଲା, "ମୋ ନାମ ପିଙ୍ଗଳ । ଘର ଅବନ୍ତୀ ନଗରୀରେ । ମୋ ଗୁରୁ ହେଲେ ପଦ୍ମପାଦ ।"

"ତମ ଗୁରୁ କିଏ ସେଥିରେ କିଛି ଯାଏ ଆସେ ନାହିଁ । ତମେ ଯଦି ଅବନ୍ତୀ ନଗରୀର ପିଙ୍ଗଳ, ତେବେ ତମ ପାଇଁ ଦ୍ୱାର ଖୋଲି ଦେଉଛି ।" ଏ ସ୍ୱର ଶୁଭିବା ସଙ୍ଗେ ସଙ୍ଗେ ଦ୍ୱାର ଖୋଲିଗଲା । ଭିତରୁ ଝକ୍‌ଝକ୍ କରୁଥିବା ତରବାରି ହାତରେ ଧରି ଜଣେ କଳା ମଣିଷ ଠିଆ ହୋଇଥିବାର ଦେଖାଗଲା ।

ପିଙ୍ଗଳ ଦ୍ୱାର ଅତିକ୍ରମ କଲା । ସେ ଉଦ୍ୟତ ତରବାରି ତଳକୁ ଆସିଯିବା ମାତ୍ରେ ସେ ଭୀଷଣାକାର ବ୍ୟକ୍ତି କହିଲା, "ଯଦି ତମେ ସତରେ ଅବନ୍ତୀ ନଗରୀର ପିଙ୍ଗଳ, ତେବେ ତମେ ମୁଣ୍ଡ ବଢ଼ାଇ ଦିଅ । ଏକା ଚୋଟରେ ତମ ମୁଣ୍ଡ ଗଣ୍ଡି ସବୁ ଅଲଗା ଅଲଗା କରିଦିଏଁ ।"

ପ୍ରାଣ ଗଲେ ବି ପଛଘୁଞ୍ଚା ଦେବା ଠିକ୍ ହେବ ନାହିଁ ବୋଲି ବିଚାର କରି ପିଙ୍ଗଳ ନିଜ ମୁଣ୍ଡ ବଢ଼ାଇ ଦେଲେ । ତତ୍‌କ୍ଷଣାତ୍ ସେ ଲୋକ ହାତରୁ ତରବାରି ଖସି ପଡ଼ିଲା । କଟା ଗଛ ଭଳି ନିଜେ ଲୋକଟି ମଧ୍ୟ ତଳେ ଗଡ଼ି ହୋଇ ପଡ଼ିଲା ।

ଏ ଘଟଣାରେ ପିଙ୍ଗଳର ସାହସ ବଢ଼ିଗଲା । ସେ ପ୍ରଥମ ଦ୍ୱାର ଅତିକ୍ରମ କରି ଦ୍ୱିତୀୟ ଦ୍ୱାର ପାଖରେ ପହଞ୍ଚିଲା । ସେ ଦ୍ୱାରକୁ ପହରା ଦେଉଥିଲା ଜଣେ ତ୍ରିଶୂଳଧାରୀ ଘୋଡ଼ସବାର୍ । ପିଙ୍ଗଳକୁ ଦେଖିବା ମାତ୍ରେ ସେ ତାକୁ ଲକ୍ଷ୍ୟ କରି ତ୍ରିଶୂଳ ଉଞ୍ଚାଇଲା ।



ପିଙ୍ଗଳ ଦୃଢ଼ କଣ୍ଠରେ କହିଲା, "ମୁଁ ଅବନ୍ତୀ ନଗରୀବାସୀ ପିଙ୍ଗଳ । ମୋତେ ବାଟ ଛାଡ଼ ।" ଏହା କହି ସେ ଅଗ୍ରସର ହେଲା । ଆଶ୍ଚର୍ଯ୍ୟର କଥା, ସେ ଘୋଡ଼ସବାର୍ ତଳେ କଚୁଡ଼ି ହୋଇ ପଡ଼ିଲା । ଦୃଢ଼ୁଁ ଦୃଢ଼ୁଁ ଆପଣା-ଛାଏଁ କବାଟ ଖୋଲିଗଲା ।

ସେଥିରେ ପିଙ୍ଗଳର ସାହସ ଆହୁରି ବଢ଼ିଗଲା । ସେ ଯାଇ ତୃତୀୟ ଦ୍ୱାର ସାମ୍‌ନାରେ ଉପସ୍ଥିତ ହେଲା ।

ତୃତୀୟ ଦ୍ୱାର ପାଖରେ ଜଣେ ଧନୁର୍ଦ୍ଧାରୀ ପିଙ୍ଗଳ ଆଡ଼େ ତୀର ଉଦ୍ୟତ କରି ଠିଆ ହୋଇଥାଏ । କିନ୍ତୁ ପିଙ୍ଗଳର ଶରୀର ମନ୍ଥର ହେଲା ନାହିଁ । ସେ ଆଗେଇ ଗଲା । ଧନୁର୍ଦ୍ଧାରୀର ତୀର ତା' ହାତରେହିଁ ରହିଲା । ସେ ତଳେ ଗଡ଼ି ପଡ଼ିଲା । ଦ୍ୱାର ଆପଣାଛାଏଁ ଖୋଲିଗଲା । ପିଙ୍ଗଳ ତୃତୀୟ ଦ୍ୱାର ଅତିକ୍ରମ କରି ଚତୁର୍ଥ ଦ୍ୱାର ଆଡ଼େ ଅଗ୍ରସର ହେଲା ।

ଚତୁର୍ଥ ଦ୍ୱାର ପାଖରେ ଦୁଇଟି ଗଣ୍ଡା ଭୀଷଣ ଗର୍ଜନ କରୁଥିଲେ । ପିଙ୍ଗଳ ସେଠାରେ ପହଞ୍ଚିବା ମାତ୍ରେ ଗଣ୍ଡା ଦୁଇଟି ତାକୁ ଆକ୍ରମଣ କରିବାକୁ ଝପଟି ଆସିଲେ । ପିଙ୍ଗଳ ପଛଘୁଞ୍ଚା ନଦେଇ ଗଣ୍ଡା ଦୁଇଟି ଲାଗି ଆସିବା ମାତ୍ରେ ସେମାନଙ୍କୁ ଛୁଇଁ ଦେଲା । ତା' ସ୍ପର୍ଶ ମାତ୍ରେ ଗଣ୍ଡା ଦୁଇଟି ଜଳି ପାଉଁଶ ହୋଇଗଲେ । ସଙ୍ଗେ ସଙ୍ଗେ କବାଟ ବି ଖୋଲିଗଲା । ପିଙ୍ଗଳ ଚତୁର୍ଥ ଦ୍ୱାର ଅତିକ୍ରମ କଲା ।

ଅଦୂରରେ ଦେଖାଗଲା ପଞ୍ଚମ ଦ୍ୱାର । ତାକୁ ଜଗିଥିଲା ଗୋଟାଏ ବିଚିତ୍ର ପ୍ରାଣୀ । ତା ଦେହର ପଛ ଅଂଶ ଗୋଟାଏ ସିଂହ ସମାନ, ଆଗ ଅଂଶ ଗରୁଡ଼ ସମାନ । ପିଙ୍ଗଳ ତାକୁ ଦେଖି ଆଶ୍ଚର୍ଯ୍ୟ ହେଲା । ସେ ପ୍ରାଣୀ ନିଜ ଡେଣା ହଲାଇ ପିଙ୍ଗଳକୁ ଆକ୍ରମଣ କରିବାକୁ ଉଦ୍ୟତ ହେଉଥାଏ ।

ପିଙ୍ଗଳ ଗମ୍ଭୀର ସ୍ୱରରେ କହିଲା, "ମୁଁ ଅବନ୍ତୀ ନଗରୀର ପିଙ୍ଗଳ । ମୋ ଆଗରୁ ତୁମେ ହଟିଯାଅ ।" ଏହା କହି ସେ ଆଗକୁ ଅଗ୍ରସର ହେଲା ।

ଗରୁଡ଼-ସିଂହ ବିଦୀର୍ଣ୍ଣ ହୋଇଗଲା । ତା' ଦେହାଂଶ ଖଣ୍ଡ ଖଣ୍ଡ ହୋଇ ଏଣେତେଣେ

ପଡ଼ିଲା । କବାଟ ବି ଖୋଲିଗଲା । ପିଙ୍ଗଳ ପଞ୍ଚମ ଦ୍ୱାର ଅତିକ୍ରମ କଲା । ଆଗରେ ଦେଖାଦେଲା ଷଷ୍ଠ ଦ୍ୱାର ।

ଏହି ଦ୍ୱାରଟି ପାରିହେବା ମାତ୍ରେ ସେ ମହାମାୟୀଙ୍କ ସମାଧି ପାଖରେ ପହଞ୍ଚିବ । ସେଠାରୁ ଅଙ୍ଗୁରୀୟ, ବଜ୍ରଚୁଡ଼ିକା ତଥା ଭୂଗୋଳ ଭଳି ଗୋଟିଏ ଦୁର୍ଲଭ ବସ୍ତୁ ମିଳିବା କଥା । ସେତକ ହସ୍ତଗତ ହେଲେ କାର୍ଯ୍ୟ ସିଦ୍ଧି । ପିଙ୍ଗଳ ଉତ୍ସାହଭରେ ଆସି ସେ ଦ୍ୱାର ପାଖରେ ପହଞ୍ଚିଲା ।

କିନ୍ତୁ ଷଷ୍ଠ ଦ୍ୱାର ପାଖରେ ସିଏ ଯାହା ଦେଖିଲା, ସେଥିରେ ମୁହୂର୍ତ୍ତକ ସକାଶେ କିଂକର୍ତ୍ତବ୍ୟବିମୂଢ଼ ଅନୁଭବ କଲା । କାରଣ ସେଠାରେ ଗଦାହସ୍ତେ ଠିଆ ହୋଇଥିଲେ ଖୋଦ୍ ପଦ୍ମପାଦ । କିନ୍ତୁ ପିଙ୍ଗଳ ନିଜକୁ ସମ୍ଭାଳି ନେଇ ଅଗ୍ରସର ହେଲା । ଭୟଙ୍କର କଣ୍ଠରେ କେହି ପ୍ରଶ୍ନ କଲା, "କିଏ ତୁମେ? ସେଇଠି ରୁହ ।"

ପିଙ୍ଗଳ ବୁଝିଲା, ତାକୁ ଭ୍ରମରେ ପକାଇବା ନିମନ୍ତେ କୌଣସି ପିଶାଚହିଁ ପଦ୍ମପାଦର ରୂପ ଧରି ଠିଆ ହୋଇଛି ।

କିନ୍ତୁ ସେତିକିବେଳେ ସେ ଲୋକ ଗଦା ବୁଲାଇଲା । ଗଦା ଚମକ ଉଠିବା ମାତ୍ରେ ପିଙ୍ଗଳ ପଛକୁ ହଟି ଆସିଲା । ସଙ୍ଗେ ସଙ୍ଗେ ଶୁଭିଲା କାହାର ଆବାଜ୍: "ଇଏ ଅବନ୍ତୀ ନଗରୀର ପିଙ୍ଗଳ ନୁହେଁ । ଏହାକୁ ଧରି ବାହାରକୁ ଫୋପାଡ଼ିଦିଅ ।"

ପର ମୁହୂର୍ତ୍ତରେ ତା' ପିଠିରେ ଓ ମୁଣ୍ଡରେ ଲାଠି ପାହାର ବସିବାକୁ ଲାଗିଲା । ସବୁ ଦ୍ୱାର ଝଟାପଟ୍ ବନ୍ଦ ହୋଇଗଲା । ପିଙ୍ଗଳ ଭୟରେ ଥରିବାକୁ ଲାଗିଲା ।

ତା'ର ମନେ ହେଲା ସେ ସତେ ଅବା ଆକାଶରୁ ଖସି ଖସି ତଳକୁ ଆସୁଛି—ତଳେ ସତେ ଅବା ତାକୁ ଧରି ପକାଇବାକୁ ପ୍ରସ୍ତୁତ ପଦ୍ମପାଦ ।

(କ୍ରମଶଃ)






# ନିଷ୍ପତ୍ତି ବଦଳ

ନିଶା ଗରଜୁଥାଏ । ଭୁଷାକୁ ଭୁଷା ବର୍ଷା ହେଉଥାଏ । ଶ୍ୱାନଶ୍ୱାପଦଙ୍କ ରଡ ସାଙ୍ଗକୁ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ବିଜୁଳି ଆଲୁଅର ଝଲକରେ ଦିଶିଯାଉଥାଏ ଭୟାବହ ମୂର୍ତ୍ତିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମାତ୍ର ବିଚଳିତ ନହୋଇ ପୁନର୍ବାର ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତା'ପରେ ତାକୁ କାନ୍ଧରେ ପକାଇ ଶୂନ୍‌ଶାନ୍‌ ଶ୍ମଶାନପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା ! ତମେ ଏ ନିର୍ଜନ ରାତିରେ ଏଭଳି ପରିଶ୍ରମ କାହିଁକି କରୁଛ, ବିପଦକୁ କାହିଁକି ତାଚ୍ଛଲ୍ୟ କରି ଶ୍ମଶାନରୂପକ ଏ ପ୍ରେତପୁରୀରେ ପ୍ରବେଶ କରୁଛ, ବୁଝି ପାରୁନାହିଁ । ତମେ ହୁଏତ ସ୍ୱପ୍ନରେ କିଛି ଇଙ୍ଗିତ ପାଇଛ । ବୋଧହୁଏ

**ବେତାଳ କଥା**



ସେହି ଅନୁସାରେ ବାଧାବିପତ୍ତି ନମାନି କାମ କରି ଚାଲିଛ । କିନ୍ତୁ ସ୍ୱପ୍ନର ଇଙ୍ଗିତକୁ ତାଚ୍ଛଲ୍ୟ କରିବା ଲୋକ ବି ଅଛନ୍ତି । କହୁଛି ସେହିଭଳି ଜଣେ ଲୋକର କାହାଣୀ । ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ କହିଲା: ପ୍ରତିଷ୍ଠାନ ନଗରୀରେ ରହୁଥିଲେ ଶ୍ରୀଗୁପ୍ତ ନାମକ ଜଣେ ବିଖ୍ୟାତ ବ୍ୟବସାୟୀ । ସେ ଦୁଇବର୍ଷରେ ଥରେ ସମୁଦ୍ର ସେପାରି ରାଜ୍ୟମାନଙ୍କୁ ବେପାର କରିବାକୁ ଯାଉଥିଲେ । ଲକ୍ଷ ଲକ୍ଷ ଟଙ୍କା ଉପାର୍ଜନ କରି ବ୍ୟବସାୟୀ ସେଠାରୁ ଫେରି ଆସୁଥିଲେ ।

ଥରେ ଶ୍ରୀଗୁପ୍ତ ନିଜ ଦେଶରେ ମାଲ୍ ମସଲା ଖରିଦ୍ କରିବା ଅବସରରେ ଜୟପୁର ନାମକ ଛୋଟିଆ ସହରରେ ରହୁଥିବା ତାଙ୍କର ବାଲ୍ୟବନ୍ଧୁ ମହେନ୍ଦ୍ରଙ୍କ ଘରେ ଅତିଥି ହେଲେ । ମହେନ୍ଦ୍ର ମଧ୍ୟ ବ୍ୟବସାୟ କରୁଥିଲେ । କିନ୍ତୁ ସମୁଦ୍ରରେ ନୁହେଁ । ସେ ସହରରେ ଦୋକାନଟିଏ କରିଥିଲେ ଓ ସେଥିରୁ ଭଲ ଲାଭ କରୁଥିଲେ । କୋଠାଘର ବି ତୋଳାଥିଲେ ଓ ସୁଖରେ ଥିଲେ ।

ଶ୍ରୀଗୁପ୍ତ ବନ୍ଧୁଙ୍କ ଘରେ ଦୁଇଦିନ ବିଶ୍ରାମ କରିବା ଅବସରରେ ବନ୍ଧୁଙ୍କୁ କହିଲେ, "ମହେନ୍ଦ୍ର! ତମର ଅଧ୍ୟବସାୟ ଯେମିତି, ବୁଦ୍ଧିମତ୍ତା ବି ସେମିତି । ଦୋକାନରୁ ଉପାର୍ଜନ ବି ମନ୍ଦ ହେଉନାହିଁ ବୋଲି ବୁଝୁଛି । କିନ୍ତୁ ଏଭଳି ଦୋକାନଟାଏ କରି ତମେ କେବେ ଧନପତି ହେବ, ସେ ଆଶା ନାହିଁ । ଗୋଟାଏ କାମ କର । କିଛି ମୂଳଧନ ଧରି ଥରେ ମୋ ସହ ସମୁଦ୍ର ସେପାରିକୁ ଚାଲ । ବିଦେଶରୁ ଜିନିଷପତ୍ର ଆଣି ଏଠାରେ ବିକ୍ରୟ କରିବ । ବାସ୍ତବିକ ସେଥିରେ ସିନା ହେବ ଲାଭ! ଦୋକାନରେ ଆଉ ବିଶେଷ କ'ଣ ହେବ? ଥରେ ସମୁଦ୍ର ସେପାରିକୁ ଯାଇ ବାଣିଜ୍ୟ କରିବାର ନିଶା ଲାଗିଗଲେ ଦେଖିବ ଆଉ ତମେ ସ୍ଥଳରେ ଖୁସିହୋଇ ରହିପାରିବ ନାହିଁ । ବାରମ୍ବାର ସମୁଦ୍ର ପଥରେ ଦେଶବିଦେଶ ବୁଲିବାକୁ ବାହାରିବ ।"



ମହେନ୍ଦ୍ର, ବନ୍ଧୁଙ୍କ କଥା ମନଦେଇ ଶୁଣିଲେ ଓ କହିଲେ, "ତମ ପରାମର୍ଶ ପାଇଁ ଧନ୍ୟବାଦ । ମୁଁ ଚିନ୍ତା କରି ଦେଖିବି ।"

ଶ୍ରୀଗୁପ୍ତ ପୁଣି କହିଲେ, "ଦେଖ, ମୁଁ ଆଜି ଛନ୍ମାସ ପରେ ବାଣିଜ୍ୟ ପାଇଁ ବାହାରିବି । ପ୍ରଥମଥର ତମେ ଏ ଦେଶରୁ କିଛି ଜିନିଷ ନେବାର ଦରକାର ନାହିଁ । ଖାଲି ବିଦେଶରୁ ଆଣିବା ନିମନ୍ତେ ଟଙ୍କା ଯୋଗାଡ଼ କର ।" ଶ୍ରୀଗୁପ୍ତ ତାଙ୍କର ପ୍ରସ୍ତାବିତ ସମୁଦ୍ର ଯାତ୍ରାର ତାରିଖ ଜଣାଇ ବିଦାୟ ନେଲେ ।

ମହେନ୍ଦ୍ର, ଏ ପ୍ରସ୍ତାବ ଉପରେ ଅନେକ ଚିନ୍ତା କଲେ । ଶେଷକୁ କିଛି ପୁଞ୍ଜି ଧରି ପ୍ରତିଷ୍ଠାନ ନଗରୀ ଉଦ୍ଦେଶ୍ୟରେ ଯାତ୍ରାରମ୍ଭ କଲେ । ବନ୍ଧୁଙ୍କ ସହ ଥରେ ବିଦେଶ ଯିବା ହେଲା ତାଙ୍କର ସିଦ୍ଧାନ୍ତ ।

ଜୟପୁରରୁ ପ୍ରତିଷ୍ଠାନ ଦୁଇ ଦିନର ବାଟ । ପ୍ରଥମ ଦିନ ବାଟ ଚାଲିଁ ଚାଲିଁ ମହେନ୍ଦ୍ର କ୍ଳାନ୍ତ ଅନୁଭବ କରି ଗୋଟିଏ ଗଛ ମୂଳରେ ଶୋଇ ପଡିଲେ । ସେତେବେଳେ ଦ୍ୱିପ୍ରହର । ହେଲେ ପାଖରେ ସରୋବର ଥିବାରୁ ଶୀତଳ ପବନ ବହୁଥାଏ ।

ତାଙ୍କୁ ନିଦ ଆସିଗଲା । ସେ ସ୍ୱପ୍ନରେ ଗୋଟିଏ ଅଦ୍ଭୁତ ବ୍ୟାପାର ଦେଖିଲେ: ଜଳରାଶି ଭିତରେ ଗୋଟିଏ ଜାହାଜ ସୁବର୍ଣ୍ଣମୟ ଦ୍ୟୁତିରେ ଝଟକୁଛି । ଜାହାଜରେ ଯେ ନାନା ପ୍ରକାର ମୂଲ୍ୟବାନ ପଦାର୍ଥ ବୋଝାଇ ହୋଇ ରହିଛି, ଏହା ଅକ୍ଳେଶରେ ବୁଝି ହେଉଥିଲା ମହେନ୍ଦ୍ର, କିଛି ସମୟ ଜାହାଜ ଆଡେ ଅନାଇ ତା'ପରେ ଲୋଭ ସମ୍ବରଣ କରି ନପାରି ଜଳ ଭିତରକୁ ଡେଇଁ ପଡ଼ିଲେ ।

ସନ୍ତରଣ କରି କରି ସେ ଠିକ୍ ଜାହାଜ ପାଖରେ ପହଞ୍ଚିଛନ୍ତି, ଗୋଟାଏ ଭୟାବହ ଆକୃତିର କେହି ଜଣେ ତାଙ୍କୁ ଜଳ ଭିତରକୁ ଟାଣିନେଲା । ସେ ମୁକୁଳିବା ପାଇଁ ଯେତେ ଛଟପଟ ହେଲେ ବି କିଛି ଲାଭ ହେଲା ନାହିଁ । ସେ ପଚାରିଲେ, "ତମେ କିଏ? ମୋତେ କାହିଁକି ଏମିତି କଲବଲ କରୁଛ?" ସେ ରୂପ ଉତ୍ତର ଦେଲା, "ମୁଁ ଦୁର୍ଭାଗ୍ୟ । ତୋତେ ଅନେକ ଦିନରୁ ମୋ ଖାପଟରେ ପାଇବା



ନିମନ୍ତେ ଉଦ୍ୟମ କରୁଥିଲି । ସୁଯୋଗ ପାଉ ନଥିଲି । ଆଜି ପାଇଛି । ଆଉ ଯିବୁ କୁଆଡ଼େ ।"

ଏହା କହି ସେ ରୂପ ତାଙ୍କୁ ଆହୁରି ତଳକୁ ଟାଣିବାକୁ ଚେଷ୍ଟା କରିବାରୁ ତାଙ୍କ ନିଦ ଭାଙ୍ଗିଗଲା । ସେ ଉଠି ବସି କିଛି ସମୟ ସ୍ୱପ୍ନ ବିଷୟରେ ଚିନ୍ତା କଲେ ସେ ଭାବିଲେ, "ଏମିତି ତ ଛୋଟ ବ୍ୟବସାୟଟି କରି ମୁଁ ବେଶ୍ ଚଳୁଛି । ଦୁଃଖ, କଷ୍ଟ, ବିପଦ କିଛି ନାହିଁ । କେବଳ ଅଧିକ ଧନ ଉପାର୍ଜ୍ଜନ ପାଇଁ କାହିଁକି ଲୋଭରେ ପଡି ବିପଦ ବରଣ କରିବି । ତା'ପରେ ସାମୁଦ୍ରିକ ବାଣିଜ୍ୟ ସକାଶେ ଯିବାର ଯୋଜନା ପରିତ୍ୟାଗ କରି ଘର ଆଡ଼େ ଫେରିଲେ । କିନ୍ତୁ ମେଘ ଆସିଲା ଓ ପ୍ରବଳ ବର୍ଷା ହେବାର ଆଶଙ୍କା କରି ସେ ଏକ କ୍ରୋଶ ଦୂରବର୍ତ୍ତୀ ଗୋଟିଏ ଚଟି ଘରେ ରାତି ବିତାଇବାକୁ ଠିକ୍ କଲେ । କିନ୍ତୁ ଆକାଶ ପରିଛନ୍ନ ହୋଇଗଲା । ସେ ଚଟିଘର ବାହାରେ ଗୋଟିଏ ଗଛମୂଳେ ବସି ନିଦ ଆସିବାରୁ ଶୋଇ ପଡ଼ିଲେ ।

ପୁଣି ସେ ସ୍ୱପ୍ନ ଦେଖିଲେ ବିଶାଳ ସମୁଦ୍ରର ମଝିରେ ସୁନାଭଳି ଉଜ୍ଜ୍ୱଳ ଜାହାଜ । ସେ ପାଣିକୁ ଡେଇଁପଡ଼ି ଜାହାଜ ପାଖରେ ପହଞ୍ଚିବାକୁ ଚେଷ୍ଟା କଲେ । ସନ୍ତରଣ କରୁଁ କରୁଁ ହାଲିଆ ହୋଇପଡି ସେ ବୁଡ଼ି ଯିବାକୁ ବସିଛନ୍ତି, ସେତିକିବେଳେ ଏକ ଦେବୀମୂର୍ତ୍ତି ତାଙ୍କୁ ଧରି ପାଣିରୁ ଜାହାଜକୁ ଉଠାଇଦେଲେ । ମହେନ୍ଦ୍ର ପଚାରିଲେ, "ତୁମେ କିଏ ?" ଦେବୀମୂର୍ତ୍ତି କହିଲେ, "ମୁଁ ତୋ ଭାଗ୍ୟର ଦେବୀ । ତୋ ଭାଗ୍ୟର ଲିଖନକୁ ମୁଁ ରୂପ ଦିଏଁ ।"

ଦେବୀ ଅଦୃଶ୍ୟ ହୋଇଯିବା ପରେ ମହେନ୍ଦ୍ର ଦେଖିଲେ, ଜାହାଜର ଅଭ୍ୟନ୍ତରର ଦୃଶ୍ୟ ତାଙ୍କର ଦୋକାନ ଭଳି । ଖାଲି ଦୋକାନଠୁଁ ବେଶି ସମୃଦ୍ଧ । ଦୋକାନରେ ଯେଉଁ ଜିନିଷ ଗୋଟିଏ ଅଛି, ଏଠି ତାହା ଦଶଟି ଅଛି । ପୁଣି ବଡ଼ ଆକାରରେ ଅଛି ।

ନିଦ ଭାଙ୍ଗିଗଲା । ମହେନ୍ଦ୍ର ଭୋର ପର୍ଯ୍ୟନ୍ତ ଚଟି ଘରେ ଅପେକ୍ଷା କରି ଘରକୁ ଫେରିଲେ । ପ୍ରତିଷ୍ଠାନ ନଗରୀକୁ ଆଉ ଗଲେ ନାହିଁ ।

ବେତାଳ ଟିକଏ ଚୁପ୍ ରହି ପ୍ରଶ୍ନ କଲା: "ମହେନ୍ଦ୍ର, ପ୍ରଥମ ସ୍ୱପ୍ନ ଦେଖି ଯଦି ହତାଶ ହୋଇ ସମୁଦ୍ର ଯାତ୍ରାର ଯୋଜନା ପରିହାର କଲେ, ଦ୍ୱିତୀୟ ସ୍ୱପ୍ନ ଦେଖି ଉତ୍ସାହିତ ହୋଇ ପୁଣି ଥରେ ସମୁଦ୍ରଯାତ୍ରା ପାଇଁ ବନ୍ଦୁ ଘରରୁ ନଗଲେ କାହିଁକି? ଏଥିରୁ ମନେହୁଏ ତାଙ୍କ ମନ ଅସ୍ଥିର। କିମ୍ବା ସେ ଠିକ୍ ଭାବରେ ସ୍ୱପ୍ନର ବ୍ୟାଖ୍ୟା କରିପାରିଲେ ନାହିଁ। ଠିକ୍ କି ନୁହେଁ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ। ଉତ୍ତର ଦେବାର ଶକ୍ତି ଥାଇ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ।"

ରାଜା ବିକ୍ରମାର୍କ ମୁହୂର୍ତ୍ତେ ମାତ୍ର ବିଳମ୍ବ ନକରି ଉତ୍ତର ଦେଲେ, "ମହେନ୍ଦ୍ର ଅସ୍ଥିର-ମନା ନୁହନ୍ତି କିମ୍ବା ସ୍ୱପ୍ନର ଭୁଲ୍ ବ୍ୟାଖ୍ୟା କରି ନାହାନ୍ତି। ସେ ପ୍ରଥମ ସ୍ୱପ୍ନରୁ ବୁଝିଲେ, ସମୁଦ୍ର ଯାତ୍ରାରେ ଗଲେ ତାଙ୍କୁ ଦୁର୍ଭାଗ୍ୟର ଶିକାର ହେବାକୁ ପଡ଼ିବ। କାରଣ ସେଥିରେ ଯେମିତି ଲକ୍ଷ ଲକ୍ଷ ଟଙ୍କା ଲାଭ ହୋଇପାରେ, ସେମିତି ହଠାତ୍ ଲକ୍ଷ ଲକ୍ଷ କ୍ଷତି ବି ହୋଇପାରେ। ଦ୍ୱିତୀୟ ସ୍ୱପ୍ନରୁ ସେ ବୁଝିଲେ ଯେ ରାଜ୍ୟରେ ତାଙ୍କର ଯାହା ଅଛି, ତାହାର ରୂପ ଦେବା ସକାଶେ ଦେବାତ୍ମା ତାଙ୍କୁ ସାହାଯ୍ୟ କରୁଛି। ତାହାଙ୍କର ଅଭ୍ୟନ୍ତର ତାଙ୍କ ଦୋକାନ ଭଳି, ଅଥଚ ଦୋକାନଠୁଁ ସବୁ ଜିନିଷ ଅଧିକ ବୋଲି ମନେ ହେଲା। ଏହାର ଅର୍ଥ ତାଙ୍କର ସମୃଦ୍ଧି ତାଙ୍କ ଦୋକାନରୁହିଁ ହେବ। ସେ ଯେଉଁ ବ୍ୟବସାୟ କରୁଛନ୍ତି, ଦିନେ ତାହାହିଁ ବଡ଼ ବଡ଼ ତାଙ୍କୁ ଅଧିକ ଧନୀ କରିଦେବ। ନୂତନ ବ୍ୟବସାୟ ପାଇଁ ସମୁଦ୍ର ପଥରେ ଯିବା ଅନାବଶ୍ୟକ।"

ରାଜାଙ୍କ ମୌନଭଙ୍ଗ ହେବା ମାତ୍ରେ ଶବସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡିଲା।

(କଳ୍ପିତ)






# ରାଜଦୂତର ଧର୍ମ

ରତ୍ନଗିରି ଓ ହେମଗିରି ନାମକ ଦୁଇଟି ପଡ଼ୋଶୀ ରାଜ୍ୟ ମଧ୍ୟରେ ସୀମା ନିର୍ଦ୍ଧାରଣ ସକାଶେ ଟିକିଏ ମନୋମାଳିନ୍ୟ ଦେଖା ଦେଇଥାଏ। ଯଦିଓ ରତ୍ନଗିରିର ରାଜା ଧନଞ୍ଜୟ ଥିଲେ ଶକ୍ତିଶାଳୀ ତଥାପି ସୀମା ସଂକ୍ରାନ୍ତରେ ହଠାତ୍ ହେମଗିରିକୁ ଆକ୍ରମଣ କରିଲେ ହୁଏତ ଅନ୍ୟ ରାଜାମାନେ ତାଙ୍କୁ ସାହାଯ୍ୟ କରିବେ, ଏଇ ସବୁ ଭାବିଚିନ୍ତି ସେ ଗୋଟିଏ ଦୂତ ହାତରେ ହେମଗିରିର ରାଜା ହିରଣ୍ମୟଙ୍କ ପାଖକୁ କିଛି ସର୍ତ୍ତ ସହ ଗୋଟିଏ ଚିଠି ପଠାଇଲେ। ସେଥିରେ ଲେଖାଥିଲା ଯଦି ସର୍ତ୍ତ ଗୁଡ଼ିକରେ ହିରଣ୍ମୟ ରାଜି ହୁଅନ୍ତି ତେବେ ସେମାନଙ୍କ ମଧ୍ୟରେ ଆପୋଷ ମିଳାମିଶା ହୋଇଯିବ।

ହିରଣ୍ମୟଙ୍କ ମନ୍ତ୍ରୀ ମହେଶ୍ୱର ଚିଠିଟି ନେଇ ରାଜାଙ୍କୁ ଦେଲେ ଓ କହିଲେ, "ମହାରାଜ, ଏ ପତ୍ର କୂଟନୀତିରେ ପୂର୍ଣ୍ଣ। ରାଜା ଧନଞ୍ଜୟ ମିଳାମିଶା ନାମରେ ଅନୁଚିତ ସର୍ତ୍ତ ସବୁ ଲେଖିଛନ୍ତି। ସର୍ତ୍ତ ପୂରଣ ନ ହେଲେ ଆକ୍ରମଣ କରିବା ପାଇଁ ତାଙ୍କୁ ଗୋଟାଏ ଆଳ ମିଳିଯିବ।"

ରାଜା କହିଲେ, "ଆଚ୍ଛା ଏମିତି କଥା। ସେ ଆମ ଆଖିରେ ଧୂଳି ଦେଇ ସବୁ କାମ କରିନେବେ। ଅସମ୍ଭବ।"

"କେବଳ ସେତିକି ନୁହେଁ ମହାରାଜ, ସେଥିରେ ଯୁଦ୍ଧ କରିବାର ଧମକ ମଧ୍ୟ ଦେଇଛନ୍ତି।" ମନ୍ତ୍ରୀ କହିଲେ।

"ଦେଖ, ଜଣେ ଦକ୍ଷବ୍ୟକ୍ତିଙ୍କୁ ଖୋଜି ଆମର ବାର୍ତ୍ତା ଦେଇ ଧନଞ୍ଜୟଙ୍କ ପାଖକୁ ଦୂତ ରୂପେ ପଠାଇଦିଅ।

"ଆଜ୍ଞା ମହାରାଜ, ମୁଁ ମଧ୍ୟ ଜଣେ ଯୋଗ୍ୟବ୍ୟକ୍ତି ଖୋଜୁଛି ଯିଏ ଆମ ରାଜ୍ୟର ପ୍ରତିନିଧିତ୍ୱ କରିବ।" ମନ୍ତ୍ରୀ କହିଲେ।

"ତୁମ ଦୃଷ୍ଟିରେ କିଏ କିଏ ସେପରି ବ୍ୟକ୍ତି ଅଛନ୍ତି କୁହ ।" ରାଜା କହିଲେ ।

ମନ୍ତ୍ରୀ ଟିକିଏ ଭାବିଚିନ୍ତି କହିଲେ, "ମହାରାଜ, ଆମର ରାଜପୁରୋହିତ ପୁଷ୍କର ଜଣେ ଚତୁର ବକ୍ତା । ସେ ନିଜର ବାକ୍‌ଚାତୁରୀ ଦ୍ୱାରା ବଡ଼ ବଡ଼ ଲୋକଙ୍କ ଉପରେ ମଧ୍ୟ ପ୍ରଭାବ ବିସ୍ତାର କରି ପାରନ୍ତି । ଆପଣ ଯାହା ବାର୍ତ୍ତା ଦେବେ ସେହି ନେଇ ରତ୍ନଗିରି ଯା'ନ୍ତୁ ।

ରାଜା ହିରଣ୍ମୟ ଟିକିଏ ଭାବି କହିଲେ, "କିନ୍ତୁ ରାଜା ଧନଞ୍ଜୟଙ୍କ ଦରବାରରେ ବହୁତ ବଡ଼ ବଡ଼ ବକ୍ତା ଅଛନ୍ତି । ତାଙ୍କ ଦରବାରର କବି ଅପୂର୍ବଙ୍କ କଥା ତ ଶୁଣିଛ । ସେ ସୁଚତୁର ବକ୍ତା ଭାବରେ ପ୍ରସିଦ୍ଧ । ଆମ ଦୂତ ଓ ସେ ଦୁହେଁ ଯଦି ନିଜ ନିଜର ବାକ୍‌ଚାତୁରୀକୁ ନେଇ ପ୍ରତିଯୋଗିତା ଆରମ୍ଭ କରିଦେବେ ତେବେ ତ ଦୁଇ ରାଜ୍ୟର ମିଳାମିଶାର ଆଉ ସମ୍ଭାବନା ନାହିଁ ।"

ମନ୍ତ୍ରୀ ମଧ୍ୟ ଅଳ୍ପ ଚିନ୍ତା କରି କହିଲେ, "ଏପରି ରାଜନୈତିକ ପରିସ୍ଥିତିରେ ଦୁଇପକ୍ଷର ଦିଆନିଆ ସମ୍ପର୍କରେ ଟିକିଏ ଉଦାର ହେବାକୁ ପଡ଼ିବ । ଆମ ରାଜ୍ୟର ଜଣେ ଶିଳ୍ପପତି ଅଛନ୍ତି ସେ ରାଜନୀତି ଓ ବ୍ୟବହାର ବିଷୟରେ ଜଣେ କୁଶଳୀ ବ୍ୟକ୍ତି । ତାଙ୍କ ନାମ ନିରଞ୍ଜନ । ତାଙ୍କ ସମ୍ପର୍କରେ ଆପଣଙ୍କର ମତ କ'ଣ ?"

"ନିରଞ୍ଜନ ମୁଖ୍ୟତଃ ଜଣେ ବ୍ୟବସାୟୀ । ତେଣୁ ବ୍ୟବସାୟ ବୁଦ୍ଧିରୁ ସେ ବ୍ୟବହାରରେ



କୁଶଳୀ ଓ ବାକପଟୁ । କିନ୍ତୁ ରାଜନୀତିରେ ସେ କେତେଦୂର ଅଭିଜ୍ଞ ସେ କଥା ଜାଣିବାର କୌଣସି ଉପାୟ ନାହିଁ । ସେ କ୍ଷେତ୍ରରେ ଜଣେ ସମ୍ପୂର୍ଣ୍ଣ ଅନଭିଜ୍ଞ ଲୋକକୁ ପଠାଇ ହାସ୍ୟାସ୍ପଦ ହେବାର କୌଣସି ପ୍ରୟୋଜନ ନାହିଁ ।" ରାଜା କହିଲେ ।

ରାଜାଙ୍କ ପାଖରେ ବସିଥିବା ବିଦୂଷକ ବିନୋଦ ସେତେବେଳେ ମଜା କରି କହିଲା, "ମହାରାଜ, ଆପଣ ଯଦି ଜାଣୁଛନ୍ତି ପୁଷ୍କର ଓ ନିରଞ୍ଜନ ସେ କାମ ପାଇଁ ଅଯୋଗ୍ୟ ତେବେ କାହିଁକି ମୋତେ ସେ ଦାୟିତ୍ୱ ଦେଉନାହାନ୍ତି ?"

ଏପରି ଏକ ଜରୁରୀ ଆଲୋଚନା ମଧ୍ୟରେ ବିଦୂଷକ ବିନୋଦର ହାସ୍ୟରସ ମନ୍ତ୍ରୀଙ୍କୁ

ଖରାପ ଲାଗିଲା । ସେ ମଧ୍ୟ ବ୍ୟଙ୍ଗ କରି କହିଲେ, "ଯଦି ସେଇଟା ହାସ୍ୟରସର କଥା ହୋଇଥା'ନ୍ତା ତ ତୁମକୁ କାମଟା କରିବାକୁ କେବେଠାରୁ ଦିଆ ଯାଇଥା'ନ୍ତା ।"

ହିରଣ୍ମୟ- ଅଳ୍ପ ଚିନ୍ତାକରି କହିଲେ, "ସତେ ତ । ଧବଳଗିରି ରାଜ୍ୟକୁ ମୋର ଦୂତ ହୋଇ ଯିବା ପାଇଁ ତମେହିଁ ତ ଯୋଗ୍ୟ ବ୍ୟକ୍ତି । ଦିନେ ଦୁଇଦିନ ମଧ୍ୟରେ ସେଠାକୁ ଯିବା ପାଇଁ ପ୍ରସ୍ତୁତ ହୋଇଯାଅ ।"

ରାଜାଙ୍କର ଏ ପ୍ରକାର କଥାଶୁଣି ମନ୍ତ୍ରୀ ଖୁବ୍ ଆଶ୍ଚର୍ଯ୍ୟ ହେଲେ । ସେ ରାଜାଙ୍କୁ କିଛି ହୁଏତ କହିବାକୁ ଚାହୁଁଥିଲେ । କିନ୍ତୁ ରାଜା ନିଜ କଥାକୁ ଆହୁରି ଜୋର ଦେଇ କହିଲେ, "ପ୍ରଥମରେ ବିନୋଦର ବାକ୍‌ପଟୁତାରେ ମୁଁ ନିଜେ ପ୍ରଭାବିତ । ବିନୋଦ ଜାଣେ ସେମାନଙ୍କୁ କପରି ପ୍ରଭାବିତ କରିବାକୁ ହେବ ଏବଂ ଯେତେଦିନ ସେମାନେ ଆମ ସର୍ତ୍ତରେ ଅମଙ୍ଗ ହେବେ ସେତେଦିନ ପର୍ଯ୍ୟନ୍ତ ଆମେ ଅପେକ୍ଷା କରିଥିବୁ ଓ ଇତିମଧ୍ୟରେ ଆମେ ସମସ୍ତ ପାଇବା ନିଜକୁ ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାକୁ, ଯଦି ମିଳାମିଶା ନହୁଏ ।"

ରାଜା ବିନୋଦକୁ ଅବଶେଷରେ ଧନଞ୍ଜୟଙ୍କ ଦରବାରକୁ ପଠାଇଲେ । ରାଜାଙ୍କ କଥା ଅନୁସାରେ ସେଠାରେ ବିନୋଦ ଇଚ୍ଛା କରି ବହୁଦିନ ଧରି ଆଲୋଚନାହିଁ କେବଳ କରି ଚାଲିଲା । ଇତିମଧ୍ୟରେ ହିରଣ୍ମୟ ଯୁଦ୍ଧ ପାଇଁ ସମ୍ପୂର୍ଣ୍ଣ ପ୍ରସ୍ତୁତ । କାଳବିଳମ୍ବ ନକରି ବିନୋଦ ଅନ୍ୟ ପଡ଼ୋଶୀ ରାଜ୍ୟର ରାଜାମାନଙ୍କୁ ମଧ୍ୟ ହିରଣ୍ମୟଙ୍କ ପକ୍ଷକୁ ନେଇ ଆସିଲା । ଏପରି ଭାବରେ କାର୍ଯ୍ୟ ହେଲା ଯେ ହିରଣ୍ମୟ ଖୁବ୍ ଶକ୍ତିଶାଳୀ ହୋଇ ଉଠିଲେ । ହିରଣ୍ମୟଙ୍କର ଯୁଦ୍ଧ ପ୍ରସ୍ତୁତ ଦେଖି ରାଜା ଧନଞ୍ଜୟ ତାଙ୍କ ସର୍ତ୍ତରେ ରାଜି ହେଲେ ଓ ମିଳାମିଶା ହୋଇଗଲା । ସେହିଦିନଠୁ ବିଦୂଷକ ବିନୋଦ ରାଜଦୂତ ଭାବରେ ସେହି ରାଜ୍ୟର ନିଯୁକ୍ତି ପାଇଲେ ।



# ଦସ୍ତଖତ୍

ବୈଶାଳୀ ନଗରୀରେ ଶିବାନନ୍ଦ ନାମକ ଥିଲେ ଜଣେ ପଣ୍ଡିତ । ଥରେ ଗୋଟିଏ ଅଧ୍ୟକ୍ଷ ତାଙ୍କୁ ଭାଷଣ ଦେବା ସକାଶେ ନିମନ୍ତ୍ରଣ କଲେ । ଗୁରୁକୁଳର ଛାତ୍ରମାନଙ୍କୁ ଗୋଟାଏ ଦାର୍ଶନିକ ବିଷୟରେ ଘଣ୍ଟାଏ ବୁଝାଇ ପଣ୍ଡିତ କହିଲେ, "ମୁଁ ଯାହା କହିଲି, ତାର ସାରାଂଶ ଲେଖିଲ ଦେଖିବା !"

ସବୁ ଛାତ୍ର ଅଧଘଣ୍ଟାଏ ଭିତରେ ନିଜ ନିଜ ଲେଖା ପଣ୍ଡିତଙ୍କୁ ଦେଲେ । ଦେଖିବା ବେଳକୁ ଖଣ୍ଡିଏ କାଗଜରେ ଖାଲି ଗୋଟାଏ ଶବ୍ଦ ବଡ଼ ବଡ଼ ଅକ୍ଷରରେ ଲେଖା ଅଛି : "ଓଲୁ ।"

ପଣ୍ଡିତେ ପିଲାଙ୍କୁ କହିଲେ, "କେତେଥର ପିଲାମାନେ ପ୍ରଶ୍ନର ଉତ୍ତର ଲେଖି ନିଜ ନାମ ଲେଖିବାକୁ ଭୁଲିଯିବା କଥା ମୁଁ ଜାଣେ । କିନ୍ତୁ ଏଇ ପ୍ରଥମଥର ପାଇଁ ଦେଖୁଛି, ଜଣେ ନିଜ ନାମ ଦସ୍ତଖତ୍ କରିଛି, କିନ୍ତୁ ଉତ୍ତର ଲେଖିବାକୁ ଭୁଲି ଯାଇଛି !"

ପିଲାଏ ପଚାରିଲେ, "କିଏ ସେ ?" ପଣ୍ଡିତେ ସେ କାଗଜଟି ଦେଖାଇଲେ । ଯିଏ ପଣ୍ଡିତଙ୍କୁ ଅପମାନ ଦେବାପାଇଁ ତାହା ଲେଖିଥିଲା, ଲଜ୍ଜାରେ ତା' ମୁଣ୍ଡ ତଳକୁ ହୋଇଗଲା ।





# ଯୁବରାଜଙ୍କ ବୁଦ୍ଧି

ଅରୁଣଗିରିର ରାଜା ପ୍ରତାପସେନ ହଠାତ୍ ଅସୁସ୍ଥ ହୋଇ ପଡ଼ିଲେ । ରାଜକାର୍ଯ୍ୟରେ ବାଧା ହେଲା । ରାଜା ଯୁବରାଜ କୀର୍ତ୍ତିସେନ୍‌ଙ୍କୁ ଦାୟିତ୍ୱ ତୁଲାଇବାକୁ ନିର୍ଦ୍ଦେଶ ଦେଲେ ।

ପ୍ରାୟ ଛଅମାସ ପରେ ରାଜା ଯେତେବେଳେ ପୁଣି କାର୍ଯ୍ୟଭାର ଗ୍ରହଣ କଲେ, ଦେଖିଲେ ତାଙ୍କ ଅସୁସ୍ଥତା ବେଳେ ରାଜକାର୍ଯ୍ୟରେ ମୋଟେ ବ୍ୟାଘାତ ଘଟିନାହିଁ । ସବୁ ସୁରୁଖୁରୁରେ ହୋଇଛି । ରାଜା ଯୁବରାଜ କୀର୍ତ୍ତିସେନଙ୍କ ଉପରେ ଖୁସି ହେଲେ ।

ସେତିକିବେଳେ ମନ୍ତ୍ରୀ ବସ୍ତୁଦାସଙ୍କର ହଠାତ୍ ପରଲୋକ ହୋଇଗଲା । ରାଜା ବଡ଼ ବ୍ୟଥିତ ହେଲେ । ଦିନେ ସେ ପୁଅକୁ କହିଲେ, "ବସ୍ତୁଦାସଙ୍କ ପୁଅ କୁମରଦାସ ଖୁବ୍ ବୁଦ୍ଧିମାନ ଓ ନମ୍ର । ତାକୁ ମନ୍ତ୍ରୀପଦରେ ବସାଉଛି ।"

"ପିତା ! ଆପଣ ମନ୍ତ୍ରୀ ନିର୍ବାଚନ ଦାୟିତ୍ୱ ମୋ ଉପରେ ଛାଡ଼ିଦେଲେ ଭଲ ହୁଅନ୍ତା ।" ଯୁବରାଜ କହିଲେ ।

ରାଜା ଭାବିଲେ, ପୁଅ ଯେତେବେଳେ ସୁରୁଖୁରୁରେ ରାଜକାର୍ଯ୍ୟ ଚଳାଇଛି ହଠାତ୍ ତା କଥା ନ ରଖିଲେ ସେ ମନ ଖରାପ କରିପାରେ । ଦ୍ୱିତୀୟତଃ ତାଙ୍କ ଅନ୍ତେ ପୁଅହିଁ ରାଜା ହେବ । ତେଣୁ ନିଜ ମନ୍ତ୍ରୀ ସେ ନିଜେ ମନୋନୟନ କରିବା ଉଚିତ ।

"ହଉ । କିନ୍ତୁ ତୁ କିଭଳି ପଦ୍ଧତିରେ ମନ୍ତ୍ରୀ ନିର୍ବାଚନ କରିବୁ, ମୁଁ ତାହା ଦେଖିବି ।" ରାଜା କହିଲେ ।

ମନ୍ତ୍ରୀପଦ ପାଇଁ ଯେଉଁ ଅମାତ୍ୟମାନଙ୍କର ଯୋଗ୍ୟତା ଅଛି ବୋଲି ରାଜା ଓ ଯୁବରାଜ ଭାବୁଥିଲେ, ସେମାନଙ୍କୁ ଜଣ ଜଣ କରି ଡକା ହେଲା । ଯୁବରାଜ ସମସ୍ତଙ୍କୁ ଗୋଟିଏ ମାତ୍ର

ପ୍ରଶ୍ନ ପଚାରୁଥାନ୍ତି, "ପାଞ୍ଚରେ ଦୁଇ ଗୁଣିଲେ କେତେ ?" ସମସ୍ତେ ଉତ୍ତର ଦେଉଥାନ୍ତି, "ଦଶ !" କିନ୍ତୁ ଏ ଉତ୍ତର ଦେବା ପ୍ରାର୍ଥୀମାନେ ଯୁବରାଜଙ୍କ ତାଲିକାରେ କାଟ ଖାଇ ଯାଉଥାନ୍ତି ।

କୁମରଦାସଙ୍କ ପାଳି ପଡ଼ିଲା । ଏକା ପ୍ରଶ୍ନର ଉତ୍ତରରେ ସେ କହିଲେ, "ସାତ !" ଯୁବରାଜ ଖୁସି ହୋଇ କହିଲେ, "ତୁମର ଯୋଗ୍ୟତା ଅଛି ।"

କିନ୍ତୁ କୁମରଦାସ କହିଲେ, "ମହିମା ! ମୁଁ କିନ୍ତୁ ବାସ୍ତବରେ କୌଣସି ଯୁକ୍ତିଯୁକ୍ତ ଉତ୍ତର ଦେଇନାହିଁ । ପାଞ୍ଚର ଦୁଇଗୁଣ ଦଶ ନ ହୋଇ କାହିଁକି ସାତ ହେବ, ସେକଥା ମୁଁ ଜାଣେନା । ଖାଲି ଏଡ଼େ ଛୋଟ ପ୍ରଶ୍ନର ସିଧା ଉତ୍ତର ଦେବାରେ କିଛି ବିଶେଷତ୍ୱ ନାହିଁ ବୋଲି ମୁଁ ସେମିତି କହିଦେଲି ।"

"ତେବେ ତୁମେ ଯୋଗ୍ୟ ନୁହଁ !" ଯୁବରାଜ କହିଲେ ।

କୁମରଦାସ ଚାଲିଯିବା ପରେ ରାଜା ଯୁବରାଜଙ୍କୁ ପଚାରିଲେ, "ତୋର ଏ ପ୍ରଶ୍ନର ତାତ୍ପର୍ଯ୍ୟ କ'ଣ ?"

"ପରଲୋକଗତ ମନ୍ତ୍ରୀ ବସ୍ତୁଦାସ କହୁଥାନ୍ତି କି ଖାଲି ଅଙ୍କଜ୍ଞାନ ଥିଲେ ଯେ ଜଣେ ଯୋଗ୍ୟ ମନ୍ତ୍ରୀ ହୋଇଯିବ, ତାହା ନୁହେଁ । ଅର୍ଥାତ୍ ଯାହାର ଅଙ୍କଜ୍ଞାନ ନାହିଁ, ସେ ଯୋଗ୍ୟ ମନ୍ତ୍ରୀ ହେବ । ସେଥିପାଇଁ ମୁଁ ଅଙ୍କଜ୍ଞାନ-ଶୂନ୍ୟ ଲୋକଟିଏ ଖୋଜୁଛି !" ଯୁବରାଜ ଉତ୍ତର ଦେଲେ ।

ରାଜା ମୁଣ୍ଡରେ ହାତ ଦେଇ ବସିଲେ । ସେ ଯେ ଯୁବରାଜଙ୍କୁ ବୁଦ୍ଧିମାନ ଯୁବକ ବୋଲି ଭାବିଥିଲେ, ତାଙ୍କର ସେ ଧାରଣା ଦୂର ହେଲା । ସେ ବୁଝିଲେ ଯେ ତାଙ୍କ ଅସୁସ୍ଥତା ବେଳେ ମନ୍ତ୍ରୀ ବସ୍ତୁଦାସହିଁ ରାଜକାର୍ଯ୍ୟ ସମ୍ଭାଳୁଥିଲେ ।

ସେ ମନ୍ତ୍ରୀ ନିର୍ବାଚନ ଭାର ଯୁବରାଜ ଉପରେ ନ୍ୟସ୍ତ ନ କରି ନିଜେ କୁମରଦାସଙ୍କୁ ସେ ପଦରେ ବସାଇ ଦେଲେ ।





# କୃତଘ୍ନର ଶାସ୍ତି

ବାରଣସୀର ରାଜା ବ୍ରହ୍ମଦତ୍ତଙ୍କର ପୁଅ ପିଲାବେଳରୁହିଁ ଅତ୍ୟନ୍ତ ଦୁଷ୍ଟ ହେବାର ଦେଖାଗଲା । ଯେତେବେଳେ ତା' ବୟସ କୋଡ଼ିଏ, ସେତେବେଳେ ତାକୁ ନେଇ ରାଜା ବଡ଼ ଚିନ୍ତାରେ ପଡ଼ିଲେ ।

ଦଳେ କୁସଙ୍ଗ ମେଳରେ ପଡ଼ି ରାଜପୁତ୍ର ସର୍ବଦା ନିରୀହ ଲୋକଙ୍କୁ ହଇରାଣ କରୁଥାନ୍ତି । ଦୂର ଦେଶର ତୀର୍ଥଯାତ୍ରୀମାନଙ୍କ ଉପରେ ଚଢ଼ଉ କରି ସେମାନଙ୍କ ସର୍ବସ୍ୱ ଲୁଣ୍ଠନ କରୁଥାନ୍ତି । ଯେତେବେଳେ ଯାହା ମନ ହେଉଥାଏ, ତାହା କରୁଥାନ୍ତି ।

ଦିନେ ଆକାଶରେ ମେଘ ଘୋଟି ଆସିଥାଏ । ରାଜପୁତ୍ର ଯାଇ ନଦୀରେ ସନ୍ତରଣ କରିବାକୁ ମନ ବଳାଇଲେ । ତାଙ୍କୁ ଖୋସାମୋଦ କରି ଲାଭ ଉଠାଉଥିବା ଯୁବକମାନେ କହିଲେ, "ହଁ ଆଜ୍ଞା, ଏହାହିଁ ସନ୍ତରଣ ଓ ସ୍ନାନ ସକାଶେ ସବୁଠାରୁ ଉତ୍କୃଷ୍ଟ ସମୟ ।"

ମିତ୍ରମାନଙ୍କୁ ଧରି ସାଙ୍ଗରେ କେତେଜଣ ଚାକରଙ୍କୁ ନେଇ ରାଜପୁତ୍ର ନଦୀରେ ପଶିଲେ । କ୍ରମେ ସାରା ଆକାଶ ଘୋଟି ମେଘ ଆସିଲା ଓ ବର୍ଷା ହେଲା ।

"ମୁଁ ମଝି ନଈକୁ ଯିବି । ଚାଲ ମୋ ସାଙ୍ଗରେ !" ରାଜପୁତ୍ର ଚାକରମାନଙ୍କୁ କହିଲେ । ସେ ନିଜେ ଭଲ ସନ୍ତରଣ କରିପାରୁ ନଥାନ୍ତି ବୋଲି ସେ ନଈରେ ପଶିଲେ ଚାକରଦଳ ସବୁବେଳେ ପାଖରେ ରହୁଥାନ୍ତି । ମଝି ନଈରେ ବେଶି ଜଳ ନଥିଲା । ରାଜପୁତ୍ର ଖୁସିରେ ସନ୍ତରଣ କରୁଥାନ୍ତି । ହଠାତ୍ ବର୍ଷା ତୋଫାନ୍‌ରେ ପରିଣତ ହେଲା । ନଈର ଉତ୍ପତ୍ତି ସ୍ଥଳରେ ଦୁଇଦିନ ଧରି ଭୀଷଣ ବର୍ଷା ହୋଇଥାଏ ।

ସେତିକିବେଳେ ବନ୍ୟା ଆସି ନଦୀର ଜଳରାଶିକୁ ପ୍ରବଳ କରିଦେଲା ।

ଅନ୍ଧାର ଘୋଟି ଆସିବାରୁ ରାଜପୁତ୍ର ନିଜ ମିତ୍ର ଓ ଚାକରମାନଙ୍କଠାରୁ ବିଚ୍ଛିନ୍ନ ହୋଇ ପଡିଲେ । ସେ ବନ୍ୟା ସ୍ରୋତରେ ଭାସିଗଲେ । ଚାକରମାନେ ପ୍ରାଣପାତ କରି ଉଦ୍ୟମ କରିଥିଲେ ହୁଏତ ତାଙ୍କୁ ରକ୍ଷା କରି ପାରିଥାନ୍ତେ । କିନ୍ତୁ ତାଙ୍କୁ ସେମାନେ ଘୃଣା କରୁଥିଲେ । ନିଜ ଜୀବନ ବିପନ୍ନ କରି ତାଙ୍କୁ ରକ୍ଷା କରିବାକୁ କେହି ଚେଷ୍ଟା କଲେ ନାହିଁ ।



ଚାକରମାନେ କୂଳକୁ ଉଠି ଆସିବାରୁ ମିତ୍ରମାନେ ପଚାରିଲେ, "ରାଜପୁତ୍ର ଗଲେ କୁଆଡ଼େ ?"

"ସିଏ ଆମ କଥା ନମାନି ଦୂରକୁ ଦୂର ଚାଲିଗଲେ ।" ଉତ୍ତର ଦେଲେ ଚାକରମାନେ ।

ରାଜନଅରରେ ଏତେବଡ଼ ଦୁଃସମ୍ବାଦ ଦେବାକୁ ସେମାନେ ସମସ୍ତେ ଭୟ କଲେ । ସମସ୍ତଙ୍କର ଧାରଣାଥିଲା ଏ ମହା ପ୍ରଳୟରୂପୀ ବୃଷ୍ଟି ଧାରା ଓ ଭୟଙ୍କର ପବନ ମଧ୍ୟରେ ରାଜପୁତ୍ର ଆଉ ବଞ୍ଚି ନଥିବେ । ପ୍ରାଣ ବିକଳରେ ସିଏ ଯୁଆଡ଼େ ଦୌଡି ପଳାଇଲେ । ମାତ୍ର କେତେକ ସୈନ୍ୟ ବହୁତ ସାହସର ସହିତ ଆସି ରାଜାଙ୍କୁ ଏସବୁ ଖବର ଦେଲେ ।

ରାଜନଅରରେ ଏ ଖବର ପହଞ୍ଚିବା ମାତ୍ରେ ରାଜା ପୁତ୍ରର ମୃତ୍ୟୁ ଅନୁମାନ କରି ଦୁଃଖରେ ଭାଙ୍ଗି ପଡ଼ିଲେ । କିନ୍ତୁ ତାଙ୍କ ରାଜପୁତ୍ରଙ୍କୁ ଅନ୍ୱେଷଣ କରିବା ନିମନ୍ତେ ସୈନ୍ୟମାନଙ୍କୁ ପଠାଇଲେ । ସେମାନେ ନଈ କୂଳେ କୂଳେ ଦୌଡ଼ିଲେ । କିନ୍ତୁ ରାଜପୁତ୍ରଙ୍କୁ ଠାବ କରି ପାରିଲେ ନାହିଁ ।

ଏଣେ ପ୍ରବଳ ବନ୍ୟାରେ ଭାସି ଯାଉଁ ଯାଉଁ ରାଜପୁତ୍ର ଗୋଟିଏ କାଠଗଡ଼ ଧରି ପକାଇଲେ । "ରକ୍ଷା କର !" "ରକ୍ଷା କର !" ବୋଲି ସେ ଚିତ୍କାର କରୁଥାନ୍ତି । କିନ୍ତୁ ତୋଫାନ୍ ଭିତରେ ସେ ଚିତ୍କାର କାହାକୁ ଶୁଭୁ ନଥାଏ ।

ରାଜକୁମାର ଯେଉଁ କାଠଗଡ଼ ଧରି ଭାସୁଥାନ୍ତି, ତହିଁରେ ଆଶ୍ରା ନେଇଥାନ୍ତି ଗୋଟିଏ ମୂଷା,



ଗୋଟିଏ ସାପ ଓ ଗୋଟିଏ ଶୁଆ ଚଢ଼େଇ । କ୍ରମେ କାଠଟି ଯାଇ ଗୋଟିଏ ବଣ ପାଖରେ ପହଞ୍ଚିଲା । ନଈ ସେ ବଣ ମଝିଦେଇ ଯାଇଥାଏ ।

ସେତେବେଳେ ବୋଧିସତ୍ତ୍ୱ ଜଣେ ସାଧୁ ରୂପେ ସେ ବଣରେ ରହିଥାନ୍ତି । ରାଜପୁତ୍ରଙ୍କ ଆର୍ତ୍ତନାଦ ତାଙ୍କ କାନରେ ପଡ଼ିଲା । ସେତେବେଳକୁ ବର୍ଷା ଛାଡ଼ି ଯାଇଥାଏ । ଆକାଶ ପରିଷ୍କାର ହୋଇ ଯିବାରୁ ସୂର୍ଯ୍ୟାସ୍ତ ହେବା ସତ୍ତ୍ୱେ ଆଲୁଅ ଥାଏ ।

ବୋଧିସତ୍ତ୍ୱ ସଙ୍ଗେ ସଙ୍ଗେ ନଦୀ ଗର୍ଭକୁ ଲଂଫ ଦେଲେ ଓ କାଠ ଗଣ୍ଡଟିକୁ ଠେଲି ଠେଲି କୂଳକୁ ନେଇ ଆସିଲେ । ରାଜପୁତ୍ର, ସାପ, ମୂଷା ଏବଂ ଶୁଆଙ୍କୁ ସେ ନିଜ କୁଡ଼ିଆ ପାଖକୁ ନେଇଯାଇ ନିଆଁ ଜାଳି ସେମାନଙ୍କୁ ଉଷୁମ କରାଇଲେ । ତା'ପରେ ସେ ଖାଦ୍ୟଦ୍ରବ୍ୟ ଆଣି ପ୍ରଥମେ ତିନି ଛୋଟିଆ ପ୍ରାଣୀଙ୍କୁ ଖାଇବାକୁ ଦେଇସାରି ତା'ପରେ ରାଜପୁତ୍ରଙ୍କୁ ଖାଇବାକୁ ଦେଲେ ।

ପରଦିନ ସମସ୍ତେ ବୋଧିସତ୍ତ୍ୱଙ୍କ ନିକଟରୁ ବିଦାୟ ନେଲେ । ସାପ କହିଲା, "ମହାତ୍ମା! ପୂର୍ବ ଜନ୍ମରେ ମୁଁ ଜଣେ ଲୋଭୀ ବଣିକ ଥିଲି । ଅନେକ ଟଙ୍କା ସଞ୍ଚୟ କରି ପୋତି ରଖି ମରିଗଲି । ସେଥିରୁ ଲୋଭ ତ୍ୟାଗ କରି ନପାରି ସାପ ରୂପେ ସେ ପୋତା ଧନକୁ ଜଗିଛି । କିନ୍ତୁ ଏଣିକି ଆଉ ମୋର ଲୋଭ ନାହିଁ । ତୁମେ ଯଦି ସେ ଟଙ୍କା ବାହାର କରିନେଇ କୌଣସି ହିତ କାମରେ ଲଗାଇ ପାରନ୍ତ, ତେବେ ମୁଁ ସର୍ପ ଜନ୍ମରୁ ମୁକ୍ତି ପାଆନ୍ତି ।" ଏହା କହି ସାପ ନିଜର ଠିକଣା ଦେଲା । ବୋଧିସତ୍ତ୍ୱ ଯଥା ସମୟରେ ତାକୁ ଦେଖା କରିବାର ପ୍ରତିଶ୍ରୁତି ଦେଲେ ।

ସେହିପରି ଭାବରେ ମୂଷା ଓ ଶୁଆର ନିମନ୍ତ୍ରଣ ମଧ୍ୟ ସେ ରକ୍ଷା କରିବେ ବୋଲି କହି ସେମାନଙ୍କୁ ବିଦାୟ ଦେଲେ । ତା'ପରେ ରାଜପୁତ୍ରଙ୍କୁ ସେ ବଣ ଭିତରୁ ବାହାରି କିପରି ନଅରରେ ପହଞ୍ଚିବାକୁ ହେବ, ସେ ମାର୍ଗ ବତାଇ ଦେଲେ । ରାଜପୁତ୍ର କହିଲେ,

"ମହାତ୍ମା! କେବେ ଯଦି ମୋ ରାଜଧାନୀକୁ ଆସିବେ, ତେବେ ଆପଣଙ୍କର ଉପଯୁକ୍ତ ସତ୍କାର କରିବି ।"

ବୋଧିସତ୍ତ୍ୱ ଦିନେ ନା ଦିନେ ତାଙ୍କର ଅତିଥି ହେବେ ବୋଲି ପ୍ରତିଶ୍ରୁତି ଦେଲେ ।

କିଛିଦିନ ପରେ ରାଜା ବ୍ରହ୍ମଦତ୍ତଙ୍କର ମୃତ୍ୟୁ ହେଲା । ରାଜପୁତ୍ର ରାଜା ହେଲେ । ସିଂହାସନରେ ବସିବା ମାତ୍ରେ ସେ ଆତୁର ଭୀଷଣ ଅତ୍ୟାଚାରୀ ହେଲେ ଓ ଯଥେଚ୍ଛା ଶାସନ କରିବାକୁ ଲାଗିଲେ ।

ଦିନେ ବୋଧିସତ୍ତ୍ୱ ତାଙ୍କ ପ୍ରତିଶ୍ରୁତି ରକ୍ଷା କରି ରାଜଧାନୀରେ ଯାଇ ଉପସ୍ଥିତ ହେଲେ । ସେ ରାଜପଥରେ ଚାଲୁଥିବା ବେଳେ ନୂଆ ରାଜା ରଥଚଢ଼ି ଶୀକାର ଉଦ୍ଦେଶ୍ୟରେ ବାହାରିଥାନ୍ତି । ବୋଧିସତ୍ତ୍ୱଙ୍କୁ ଦୂରରୁ ଚିହ୍ନି ପକାଇ ସେ ନିଜ ଦେହରକ୍ଷୀମାନଙ୍କୁ କହିଲେ, "ସେ ସାଧୁକୁ ବାନ୍ଧି ପକାଇ ବେଦମ୍ ପିଟ । ତା'ପରେ ତାକୁ ନେଇ ମାରିଦିଅ! ଦିନେ ମୁଁ ତା'ର ଅତିଥି ହୋଇଥିଲି ଯେ ସେ ପ୍ରଥମେ ମୋତେ ଖାଇବାକୁ ନ ଦେଇ ମୂଷା, ସାପ ଓ ଶୁଆଙ୍କୁ ଦେଇଥିଲା । ମୁଁ ସେ ଅପମାନ ଭୁଲି ନାହିଁ ।"

ଦେହରକ୍ଷୀମାନେ ଯାଇ ବୋଧିସତ୍ତ୍ୱଙ୍କୁ ଧରି ପକାଇଲେ । ତା'ପରେ ତାଙ୍କୁ ବାନ୍ଧି ପକାଇ ପିଟିବାକୁ ପ୍ରସ୍ତୁତ ହେବା ବେଳକୁ ଦଳେ ସାଧାରଣ ଲୋକ ଜମିଯାଇ ଦେହରକ୍ଷୀମାନଙ୍କୁ ବାଧା ଦେଇ ବୋଧିସତ୍ତ୍ୱଙ୍କୁ ପଚାରିଲେ,



"କଥା କ'ଣ? ଆପଣଙ୍କ ଉପରେ ରାଜା ଖପା ହେବାର କାରଣ କ'ଣ?"

"କାରଣ ମୁଁ ଥରେ ତାଙ୍କର ପ୍ରାଣରକ୍ଷା କରିଥିଲି।" ବୋଧିସତ୍ତ୍ୱ ସବୁ ଘଟଣା ବର୍ଣ୍ଣନା କଲେ।

ଲୋକେ ତ ବହୁଦିନ ଧରି ରାଜା ଉପରେ କ୍ଷୁବ୍ଧ ହୋଇ ରହିଥାନ୍ତି। ଜଣେ ପରୋପକାରୀ ନିରୀହ ସାଧୁଙ୍କ ପ୍ରତି କୃତଘ୍ନ ରାଜାର ଆଚରଣରେ ସେମାନେ ଏତେ ଉତ୍ତ୍ୟକ୍ତ ହୋଇ ଉଠିଲେ ଯେ ସଙ୍ଗେ ସଙ୍ଗେ ଦେହରକ୍ଷୀମାନଙ୍କୁ ତଡ଼ି ଦେଲେ ଓ ସାଧୁଙ୍କୁ ମୁକ୍ତ କରି ସାରି ରାଜାଙ୍କୁ ଧରିବା ପାଇଁ ଦୌଡ଼ିଲେ। ରାଜା ପଳାଇଯାଇ ପ୍ରାଣରକ୍ଷା କରିବାର ଚେଷ୍ଟା କଲେ, କିନ୍ତୁ ପାରିଲେ ନାହିଁ। ରଥ ଓଲଟାଇ ଦେଇ ଲୋକେ ରାଜାଙ୍କୁ ମାରିଦେଲେ। ବୋଧିସତ୍ତ୍ୱଙ୍କର ସେଠାରେ କିଛି କରିବାର ନଥିଲା କାରଣ ଏସବୁ ଘଟଣା ଏତେ ଶୀଘ୍ର ଗୋଟିଏ ପରେ ଗୋଟିଏ ଘଟିଗଲା ଯେ ଷବଟେନ୍ତ୍ର କରିବା ପାଇଁ ଅବସର ନଥିଲା।

ଅତ୍ୟାଚାରୀର ମୃତ୍ୟୁରେ ସମସ୍ତେ ଆନନ୍ଦିତ ହେଲେ। ତା'ପରେ ପ୍ରଶ୍ନ ହେଲା କିଏ ରାଜା ହେବ। ବୋଧିସତ୍ତ୍ୱଙ୍କ ସୌମ୍ୟ ଚେହେରା ଓ ବ୍ୟବହାର ସେମାନଙ୍କୁ ମୁଗ୍ଧ କରିଥାଏ। ସେମାନେ ତାଙ୍କୁହିଁ ଅନୁରୋଧ କରି ସିଂହାସନରେ ନେଇ ବସାଇଲେ।

ରାଜା ହେବା ପରେ ବୋଧିସତ୍ତ୍ୱ ଯାଇ ବଣ ଭିତରେ ସେ ସାପକୁ ସାକ୍ଷାତ କଲେ ଓ ତା'ର ନିର୍ଦ୍ଦେଶ ଅନୁସାରେ ପୋତାଧନ ବାହାର କରି ଆଣି ଜନକଲ୍ୟାଣରେ ବ୍ୟୟ କଲେ। ସାପ, ଶୁଆ ଏବଂ ମୂଷାକୁ ଆଣି ନଅରରେ ରଖାଇଲେ। ରାଜ-ଅତିଥି ରୂପେ ସେମାନେ ଆନନ୍ଦରେ ବାସ କଲେ। ବୋଧିସତ୍ତ୍ୱଙ୍କ ଶାସନରେ ରାଜ୍ୟରେ ସୁଶାସନ ପ୍ରତିଷ୍ଠା ହେଲା। ଲୋକେ ତାଙ୍କର ଜୟଗାନ କଲେ।





ଭାରତ-କାହାଣୀ

# ଆଓରଂଜେବ୍

ସମ୍ରାଟ ଶାହ୍‌ଜାହାନ୍‌ଙ୍କର ଥିଲେ ଚାରି ପୁତ୍ର : ଦାରା, ସୁଜା, ଆଓରଂଜେବ ଓ ମୁରାଦ । ଶାହ୍‌ଜାହାନ୍ ଦାରାଙ୍କୁ ତାଙ୍କ ଉତ୍ତରାଧିକାରୀ ମନୋନୀତ କରିଥିଲେ । ଦାରା ଥିଲେ ଦକ୍ଷ, ମେଧାବୀ ଓ ଭଦ୍ର । ସେ ବେଦ ଏବଂ ଉପନିଷଦ୍ ପାରସ୍ୟ ଭାଷାରେ ଅନୁବାଦ କରାଇଥିଲେ ।

୧୬୫୭ ମସିହାରେ ଶାହ୍‌ଜାହାନ୍ ଅସୁସ୍ଥ ହେଲେ । ତାଙ୍କ ପାଖରେ ଥିଲେ ଦାରା । ଅନ୍ୟ ତିନିପୁତ୍ର ସାମ୍ରାଜ୍ୟର ଭିନ୍ନ ଭିନ୍ନ ପ୍ରାନ୍ତରେ ରାଜ-ପ୍ରତିନିଧି ଭାବରେ କାର୍ଯ୍ୟ କରୁଥିଲେ । ସମ୍ରାଟଙ୍କ ମୃତ୍ୟୁ ଆସନ୍ନ ବୋଲି ପ୍ରଚାର ହୋଇଯିବା ମାତ୍ରେ ଦୂରରେ ଥିବା ତିନି ପୁଅ ଯାକ ଗାଦି ଅଧିକାର ପାଇଁ ଧାଇଁ ଆସିଲେ ।





ସୁଜା ବଙ୍ଗ ଦେଶରେ ଥାଇ ନିଜକୁ ସମ୍ରାଟ ବୋଲି ଘୋଷଣା କରିଦେଲେ ଓ ଆଗ୍ରା ଅଭିମୁଖେ ସୈନ୍ୟବାହିନୀ ଧରି ଅଭିଯାନ କଲେ । ଏହା ଥିଲା ସ୍ପଷ୍ଟ ରାଜଦ୍ରୋହ । ଶାହ୍‌ଜାହାନ୍‌ଙ୍କ ଆଦେଶରେ ଦାରାଙ୍କ ପୁତ୍ର ସୁଲେମାନ୍ ସିକୋ ସୁଜାଙ୍କୁ ମୁକାବିଲା କରିବା ପାଇଁ ଗଲେ । ବାରାଣସୀ ପାଖରେ ଯୁଦ୍ଧ ହେଲା । ସୁଜା ପରାସ୍ତ ହୋଇ ପଳାୟନ କଲେ ।



ଆଓରଂଜେବ ସେତେବେଳେ ଦକ୍ଷୀଣାତ୍ୟରେ ଥିଲେ । ସେ ମୁରାଦଙ୍କୁ କହିଲେ କି ଦୁହେଁ ମିଶି ସାମ୍ରାଜ୍ୟ ଦଖଲ କରିନେଇ ପରେ ନିଜ ନିଜ ଭିତରେ ଦୁଇଭାଗ କରିନେବେ । ମୁରାଦ ଥିଲେ ସରଳ ପ୍ରକୃତିର ଯୁବକ । ନିଷ୍ଠୁର ଆଓରଂଜେବ୍‌ଙ୍କ ମତଲବ୍ ସେ ବୁଝିପାରିଲେ ନାହିଁ ।

ସେ ଦୁହେଁ ଆଗ୍ରାର ଅଦୂରବର୍ତ୍ତୀ ସାମୁଗଡ଼ଠାରେ ପହଞ୍ଚିଲେ । ଦାରା ସେମାନଙ୍କୁ ବାଧା ଦେଲେ । ଦାରା ବିଜୟ ଲାଭ କରିଥାନ୍ତେ । କିନ୍ତୁ ଦୁର୍ଭାଗ୍ୟକୁ ତାଙ୍କ ହାତୀ ଆହତ ହେବାରୁ ସେ ଓଲ୍ହାଇ ପଡ଼ିଲେ । ତାଙ୍କ ସୈନ୍ୟମାନେ ଭାବିଲେ ସେ ମରିଗଲେ । ସେମାନେ ଛତଭଙ୍ଗ ଦେଲେ ।





ଆଓରଂଜେବ ଆଗ୍ରା ଆକ୍ରମଣ କରି ଦୁର୍ଗ ଅବରୋଧ କଲେ । ଭୀଷଣ ଗରମ ପଡ଼ୁଥାଏ । ଆଓରଂଜେବ୍ ଦୁର୍ଗ ଭିତରକୁ ପାଣି ଯୋଗାଣ ବନ୍ଦ କରିଦେଲେ । ଏପରିକି ବୃଦ୍ଧ ସମ୍ରାଟ ମୁନ୍ଦାଏ ପାଣି ପିଇ ପାରିଲେ ନାହିଁ । ଦୁର୍ଗର ପତନ ହେଲା ।

ଆଓରଂଜେବ୍ ଦୁର୍ଗରେ ପ୍ରବେଶ କରି ଶାହ୍ ଜାହାନ୍‌ଙ୍କୁ କଠୋର କଣ୍ଠରେ ଜଣାଇଦେଲେ ଯେ ସେ ଆଉ ସମ୍ରାଟ ନୁହନ୍ତି । ସେ ଦୁର୍ଗ ବାହାରକୁ ଯିବା କିମ୍ବା କୌଣସି ଆଦେଶ ଜାରି କରିବା ନିଷେଧ । ଶାହ୍ ଜାହାନ୍ ବୁଝିଲେ ଯେ ସେ ବନ୍ଦୀ ।





ଆଗ୍ରାରୁ ଆଓରଂଜେବ୍ ଦିଲ୍ଲୀ ଚଳିଲେ । ବାଟରେ ମଥୁରାଠାରେ ସେ ହଠାତ୍ ତାଙ୍କ ସାନଭାଇ ଓ ସହଯୋଗୀ ମୁରାଦଙ୍କୁ ବନ୍ଦୀ କଲେ । ମୁରାଦ ଅସହାୟ ଅବସ୍ଥାରେ ପଡ଼ିଲେ । ପରେ ଆଓରଂଜେବ ତାଙ୍କୁ ହତ୍ୟା କଲେ । ଏ ହୀନ ବିଶ୍ୱାସଘାତକତା ଯୋଗୁଁ ଅନେକଙ୍କ ଆଖିରେ ଆଓରଂଜେବ୍ ଘୃଣ୍ୟ ହେଲେ ।

ଦିଲ୍ଲୀରେ ପହଞ୍ଚି ଆଓରଂଜେବ୍ ନିଜକୁ ସମ୍ରାଟ ବୋଲି ଘୋଷଣା କଲେ । ସେ "ଆଲମଗିର୍" ବା ବିଶ୍ୱବିଜୟୀ ଉପାଧିରେ ନିଜକୁ ଅଲଂକୃତ କଲେ । ଏକ ଦିଗରେ ସେ ସାମ୍ରାଜ୍ୟ ଅଧିକାର କରିବା ସଙ୍ଗେ ସଙ୍ଗେ ନିଜର ଧର୍ମାନ୍ଧତା ଓ ନିର୍ମମ ଉଚ୍ଚାକାଂକ୍ଷା ଯୋଗୁଁ ମୋଗଲ୍ ସାମ୍ରାଜ୍ୟର ପତନ ପାଇଁ ଭୂମିକା ପ୍ରସ୍ତୁତ କଲେ ।





ଦାରା ଉତ୍ତର-ପଶ୍ଚିମ ସୀମାନ୍ତକୁ ପଳାୟନ କଲେ । ପୂର୍ବେ ସେ ଜୀବନ ଖାଁ ନାମକ ଲୋକର ପ୍ରାଣରକ୍ଷା କରିଥିଲେ । ତାହାରି ଘରେ ସେ ଆଶ୍ରୟ ନେଲେ । ସେଠାରେ ସେ ଶାନ୍ତିରେ ଅଧ୍ୟୟନ ରତ ଥାଇ କାଳାତିପାତ କରୁଥାନ୍ତି । କିନ୍ତୁ ଆଓରଂଜେବଙ୍କୁ ଖୁସି କରିବା ନିମନ୍ତେ ଜୀବନ ଖାଁ ତାଙ୍କୁ ଧରାଇଦେଲା । ଦାରା ଦିଲ୍ଲୀକୁ ଆଣା ହେଲେ ଓ ତାଙ୍କୁ ହତ୍ୟା କରାଗଲା ।

ସୁଜା ଆରାକାନ୍ ପର୍ବତମାଳା ଆଡ଼େ ପଳାଇଗଲେ । ତାଙ୍କର କ'ଣ ହେଲା ଜଣା ନାହିଁ । ସେଠାକାର ଲୋକଙ୍କ ହାତରେ ସେ ମରିଥିବା ବିଶ୍ୱାସ କରାଯାଏ । ଦାରାଙ୍କ ପୁତ୍ର ସୁଲେମାନ୍ ସିକୋଙ୍କୁ ବିଷ ଦେଇ ମାରି ଦିଆଗଲା । ଶେଷକୁ ଆଓରଂଜେବ୍‌ଙ୍କର ପ୍ରତିଦ୍ୱନ୍ଦୀ ବୋଲି ଆଉ କେହି ରହିଲେ ନାହିଁ ।





କିନ୍ତୁ ଆଓରଂଜେବ୍‌ଙ୍କ ମନରେ ଶାନ୍ତି ନଥାଏ । ସାମ୍ରାଜ୍ୟର ଏଣେ ତେଣେ ବିଦ୍ରୋହର ସୂତ୍ରପାତ ହେବାକୁ ଲାଗିଲା । ଆଓରଂଜେବ୍ ସର୍ବଦା ସମସ୍ତଙ୍କୁ ସନ୍ଦେହ ଚକ୍ଷୁରେ ଦେଖୁଥାନ୍ତି । ତାଙ୍କୁ ବି କେହି ଶ୍ରଦ୍ଧା ଓ ସମ୍ମାନ କରୁ ନଥିଲେ । ମଥୁରାର ଜାଠ କୃଷକମାନେ ତାଙ୍କ ବିରୁଦ୍ଧରେ ପ୍ରଥମ ପ୍ରକାଶ୍ୟ ବିଦ୍ରୋହ କଲେ ।



# ମୂଲ୍ୟବାନ ଶିକ୍ଷା !

ଗୋଟିଏ ଛୋଟ ସହରରେ ରହୁଥିଲା ଓମାର୍ । ସେ ଯେତକ ଧୂର୍ତ୍ତ, କଥାବାର୍ତ୍ତାରେ ସେତକ ଭଦ୍ର । ସେତକ ନୁହେଁ, ତା' ସହିତ ଯିଏ ଯେତେବେଳେ ସମ୍ପର୍କରେ ଆସିଛି, ସେ ଠକି ଯାଇଛି ।

ଅତଏବ ସେ ସହରରେ ଓମାର ପ୍ରତି ସମସ୍ତେ ସତର୍କ ହୋଇ ରହୁଥିଲେ ।

ବାଗ୍‌ଦାଦରୁ ମୁସ୍ତାଫା ନାମକ ଜଣେ ଯୁବକ ବ୍ୟବସାୟୀ ମଧ୍ୟେ ମଧ୍ୟେ ସେ ସହରକୁ ଆସୁଥାନ୍ତି । ମୁସ୍ତାଫା ବୁଦ୍ଧିମାନ ଓ ଭଲ ମଣିଷ । କିନ୍ତୁ ତାଙ୍କର ଗୋଟିଏ ଦୁର୍ବଳତା ଥିଲା; ଯିଏ ତାଙ୍କୁ ପ୍ରଶଂସା କରି କଥା କହିବ ବା ତାଙ୍କୁ ଖୋସାମୋଦ କରିବ, ସେ ତାଙ୍କର ଅତ୍ୟନ୍ତ ପ୍ରିୟପାତ୍ର ହୋଇଯିବ ।

ଓମାର ବାଟରେ ଘାଟରେ ଦୁଇ ଗୃରଥର ମୁସ୍ତାଫାଙ୍କୁ ସହାସ୍ୟ ବଦନରେ ସଲାମ ପକାଇଲା । ଦିନେ ମୁସ୍ତାଫା ତାକୁ ପଚାରିଲେ, "ଆପଣ ମୋତେ କେମିତି ଚିହ୍ନିଲେ ?"

"ସାହେବ୍, ଆପଣଙ୍କ ନାମଧାମ ନ ଜାଣିଲେ କ'ଣ ଆପଣଙ୍କୁ ଚିହ୍ନି ହେବ ନାହିଁ ? ଯାହାର ଆଖି ଥିବ, ସେ ଆପଣଙ୍କୁ ଦେଖିବା ମାତ୍ରେ ଜାଣି ଯିବ ଯେ ଆପଣ ଜଣେ ଅତ୍ୟନ୍ତ ସମ୍ଭ୍ରାନ୍ତ ଘରର ସନ୍ତାନ । ଆପଣଙ୍କ ବାପା ଜେଜେବାପା ନବାବ ନଥାଇ ପାରନ୍ତି । କିନ୍ତୁ ସେମାନଙ୍କର ନବାବ୍ ଭଳି ଆଦବ ଥିଲା । ଆପଣ ସେମାନଙ୍କଠାରୁ କମ ତ ନୁହନ୍ତି । ବରଂ ଆପଣ ଜଣେ ସୁଲ୍‌ତାନ୍ ହେବାର ଯୋଗ୍ୟ ବ୍ୟକ୍ତି ।" ଓମାର କହିଲା ।

ମୁସ୍ତାଫାଙ୍କ ମନ ହୃଦୟ ସବୁ ଆନନ୍ଦରେ ଫୁଲି ଉଠିଲା । ସେ ଓମାରର ପିଠି ଥାପୁଡ଼େଇ ଦେଇ କହିଲେ, "ଭାଇ, ତମ ହୃଦୟ ଯେତେ



ମହାନ୍, ଆଜି ସେହିପରି ପରିଷ୍କାର । ନହେଲେ ଏମିତି କହନ୍ତ ?"

ଓମାର ମୁସ୍ତାଫାଙ୍କର ବିଶେଷ ବନ୍ଧୁ ହୋଇଗଲା । ସେ ସହରରେ ଯେଉଁମାନେ ମୁସ୍ତାଫାଙ୍କର ଶୁଭେଚ୍ଛୁ ଥିଲେ, ସେମାନେ ପରୋକ୍ଷ ଭାବରେ ତାଙ୍କୁ ଓମାର ବିଷୟରେ ସଜାଗ କରିଦେବାକୁ ଚେଷ୍ଟା କଲେ । ସେମାନେ କହିଲେ, "ବାବୁ, ଆପଣ ବାଗ୍‌ଦାଦର ଲୋକ । ଏଠାକାର ସମସ୍ତଙ୍କୁ ଭଲ ଭାବରେ ଜାଣନ୍ତି ନାହିଁ । ଟିକିଏ ସତର୍କ ହୋଇ ରହିଥିବେ ।"

କିନ୍ତୁ ସେ ଚେତାବନୀ ମୁସ୍ତାଫାଙ୍କୁ ମୋଟେ ପ୍ରଭାବିତ କଲା ନାହିଁ । ଓମାର ସହିତ ତାଙ୍କର ସମ୍ପର୍କ ଅତୁଟ ରହିଲା ।

ବର୍ଷେ ମୁସ୍ତାଫା ସେ ସହରକୁ ଆସି ପାରିଲେ ନାହିଁ । ହଠାତ୍ ତାଙ୍କ ଘରେ ଯାଇ ଉପସ୍ଥିତ ହେଲା ଓମାର । "ଆରେ ଭାଇ, ଆସ, ଆସ । ତମେ କେମିତି ବାଗ୍‌ଦାଦ୍ ଚାଲି ଆସିଲ ?" ମୁସ୍ତାଫା ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

ଓମାର କ୍ଷୁବ୍ଧ ହେଲାଭଳି କଣ୍ଠରେ କହିଲା, "କେମିତି ଆସିଲି ? ତମକୁ ଆଶ୍ଚର୍ଯ୍ୟ ଲାଗୁଛି ପରା ! ମୋତେ ବନ୍ଧୁ ବୋଲି ସ୍ୱୀକାର କରୁଛଟି ! ତମେ ଯେତେବେଳେ ଆମ ସହରକୁ ଯିବା କଥା ସେତେବେଳେ ଗଲ ତ ନାହିଁ, କାହିଁକି ଯାଉନାହଁ, ସେ ବିଷୟରେ ଖବର ବି ଦେଲ ନାହିଁ । କ'ଣ ହେଇ ପା ଖରାପ ହେଲା କି ଭାବି ମୁଁ କେଇରାତି ଶୋଇ ପାରିଲି ନାହିଁ । ଭାବିଲି, ଥରେ ହାଲ୍‌ଚାଲ୍‌ ବୁଝି ନ ଆସିବା ଯାଏ ଶାନ୍ତି ପାଇବି ନାହିଁ !"

ଏହା ଶୁଣି ମୁସ୍ତାଫା ଗଦ୍‌ଗଦ୍ କଣ୍ଠରେ କହିଲେ, "ଭାଇ, ତମଭଳି ବନ୍ଧୁ ଯିଏ ପାଇବ, ସିଏ ବାସ୍ତବିକ ଭାଗ୍ୟବାନ । ତମେ ଆସିଲ ବହୁତ ଭଲ କଲ । ଯେତେଦିନ ପାରିବ ରୁହ ।"

ଓମାର ମୁସ୍ତାଫାଙ୍କ ଘରେ ମଉଜ୍‌ରେ ଖାଇପିଇ ମାସଟିଏ କଟାଇଲା । ସବୁବେଳେ ଦୁଇବନ୍ଧୁ ବସି ଗଳ୍ପ କରନ୍ତି କେତେବେଳେ ଏକାଠି ନିର୍ଜନ ପାହାଡ଼ ଆଡ଼େ ବୁଲିଯାନ୍ତି । ଏତେଦିନ ପରେ ବନ୍ଧୁଙ୍କୁ ପାଇ ମୁସ୍ତାଫା ତାଙ୍କର କାମଦାମ, ଘରଦ୍ୱାର, ପରିବାର



ସବୁ ଭୁଲିଗଲେ । ଓମାରର କଣ୍ଠରୁ ଓ ଭାଷାରେ ତ ମଧୁ ଝରୁଥାଏ । ସେ ମଧୁରୁ ବନ୍ଧୁତା ଆଉ ତୁଟିବାର ନୁହେଁ । ଦୁହେଁ ଦୁହିଁଙ୍କର ଏକାନ୍ତ ଘନିଷ୍ଠ ଓ ଅନ୍ତରଙ୍ଗ ହୋଇ ଉଠିଲେ, ମାସଟିଯାକ ଲାଗିଲା ଯେପରି ଦିନଟିଏ ମାତ୍ର କଟିଛି । ତା'ପରେ ଦିନେ ସେ ନିଜ ସହରକୁ ଲେଉଟି ଯିବାକୁ ପ୍ରସ୍ତୁତ ହେଲା । ସେତେବେଳେ ଓମାର ମନରେ ସେଇ ପୂର୍ବ ଶଇତାନ୍ ଜାଗ୍ରତ ହୋଇ ସାରିଲାଣି । ସେ ଯେତେବେଳେ ବିଦାୟ ହେବ, ସେତେବେଳେ ମୁସ୍ତାଫାଙ୍କ ପାଖରେ ବାଗ୍‌ଦାଦର କେତେଜଣ ଜଣାଶୁଣା ଲୋକ ଥିଲେ । ସେ କହିଲା, "ଭାଇ, ଗୁଲାଲ୍ । ମୋ ଥଳିଟି ଦିଅ ।"

"କେଉଁ ଥଳି ?" ମୁସ୍ତାଫା ଟିକିଏ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ଓଃ, ତମେ ବଡ଼ ଭୁଲା ମଣିଷ ଦେଖୁଛି । ସେଇ ଯେଉଁ ହଜାରେ ସୁନା ମୁଦ୍ରା ଭର୍ତ୍ତି ଥଳିଟି ତମକୁ ପ୍ରଥମଦିନ ଆସିବା ମାତ୍ରେ ଧରାଇ ଦେଇଥିଲି ମ !"

ମୁସ୍ତାଫା କାବା ହୋଇଗଲେ । ହଠାତ୍ ତାଙ୍କର ସନ୍ଦେହ ହେଲା—ଓମାର ସତରେ ଗୋଟିଏ ଠକ କି ? ସେ କିନ୍ତୁ ହସି ହସି କହିଲେ, "ଭୁଲା ମଣିଷ ମୁଁ ନା ତମେ? ଥଳି ତ ତମେ ମୋତେ କେବେ ବି ଦେଇନାହଁ !"

ଓମାର ଗମ୍ଭୀର ହୋଇ କହିଲା, "ବନ୍ଧୁ ସହ ବିଶ୍ୱାସଘାତକତା ମହା ପାପ । ଦେଇଦିଅ । ମୁଁ ଯାଏଁ ।"

ସେତେବେଳକୁ ଓମାର ବାଗ୍‌ଦାଦ୍‌ର ସବୁ ଲୋକଙ୍କ ସାଥିରେ ଏପରି ମଧୁର ବ୍ୟବହାର କରିଥାଏ ଯେ ସେଠି ଉପସ୍ଥିତ ଥିବା ଲୋକେ ସତରେ ଭାବିଲେ, ଓମାର ସତ କହୁଛି । ମୁସ୍ତାଫା ହୁଏତ ଭୁଲି ଯାଇଛନ୍ତି, ନହେଲେ ଦଗା ଦେଉଛନ୍ତି ।

ମୁସ୍ତାଫା ଏବଂ ଓମାର ଭିତରେ ଘାଣ୍ଟିଗୋଳ ହେଲା । ମୁସ୍ତାଫାଙ୍କର ଜଣେ ବିଶେଷ ବନ୍ଧୁ ସେଠି ପହଞ୍ଚିଗଲେ । କୌଣସି ମତେ ସେ ଅଡୁଆ ପରିସ୍ଥିତିରୁ ମୁସ୍ତାଫାଙ୍କୁ ରକ୍ଷା କରିବା

ନିମନ୍ତେ ସେ କହିଲେ, "ଓମାର, ତମେ ସାମାନ୍ୟ ଭୁଲ୍ କରିଛ । ଯେଉଁ ହଜାରେ ସ୍ୱର୍ଣ୍ଣମୁଦ୍ରା ଭର୍ତ୍ତି ଥଳି କଥା କହୁଛ, ସେ ଥଳି ତମେ ମୁସ୍ତାଫାକୁ ଦେଇ ନଥିଲ, ମୋତେ ଦେଇଥିଲ । ଚାଲ ମୋ ଘରକୁ ଦେଇଦେବି ।"

ସଙ୍ଗେ ସଙ୍ଗେ ଓମାର କହିଲା, "ନାହିଁ ଆଜ୍ଞା, ମୁଁ କିଛି ଭୁଲ କରିନାହିଁ । ଆପଣଙ୍କୁ ଯେଉଁ ଥଳି ଦେଇଥିଲି, ତାହା ମୋର ଦ୍ୱିତୀୟ ଥଳି । ମୁସ୍ତାଫାଠୁଁ ବିଦାୟ ନେଇ ଆପଣଙ୍କ ପାଖକୁ ଯାଇ ତାହା ନେଇଥାନ୍ତି । କିନ୍ତୁ ବର୍ତ୍ତମାନ ଏଠାକାର ଲୋକମାନଙ୍କର ବ୍ୟବହାର ଯାହା ଦେଖୁଛି, ଆପଣ ମୋତେ ଘରକୁ ନେଇଯାଇ ମୁସ୍ତାଫା ଭଳି ଖେକ୍‌ଠୋକ୍ ନାହିଁ କରିଦେଲେ ମୁଁ କରିବି କ'ଣ ? ଏଠି ସମସ୍ତେ ଅଛନ୍ତି । ଆପଣ ଯାଇ ଥଳିଟି ନେଇ ଆସନ୍ତୁ ।"

ମୁସ୍ତାଫାଙ୍କ ବନ୍ଧୁଙ୍କ ମୁହଁ ଫିକା ପଡିଗଲା । ସେ ମୁସ୍ତାଫାଙ୍କର ହଜାରେ ସ୍ୱର୍ଣ୍ଣମୁଦ୍ରା ଠକି ହାବୁଡ଼ରୁ ରକ୍ଷା କରିବାକୁ ଯାଇ ନିଜେ ବର୍ତ୍ତମାନ ମହା ଅଡୁଆରେ ପଡ଼ିଲେ । ଅନ୍ୟମାନେ ଅବସ୍ଥା ଦେଖୁଥିଲେ । ସେମାନେ ସମସ୍ତେ ଭାବିଲେ ଓମାର ଯଦି ଜଣକ ପାଖରେ ଟଙ୍କା ଥଳି ରଖିଥିବା ସତ, ତେବେ ସେ ମୁସ୍ତାଫା ପାଖରେ ବି ରଖି ନଥିବ କାହିଁକି ?

ସମସ୍ତଙ୍କ ମନୋଭାବ ବୁଝିପାରି ମୁସ୍ତାଫା ଓ ତାଙ୍କ ବନ୍ଧୁ ଦୁହେଁ ହଜାରେ ସ୍ୱର୍ଣ୍ଣମୁଦ୍ରା ଭର୍ତ୍ତି ଯୋଡ଼ିଏ ଥଳି ଓମାରକୁ ଦେଇଦେଲେ । ଓମାର ଚାଲିଗଲା ।

ମୁସ୍ତାଫା ତାଙ୍କ ବନ୍ଧୁଙ୍କୁ କହିଲେ, "ଭଇ, ଖୋସାମୋଦ ଶୁଣି ମୁଁ ଲୋକଟା ପାଲରେ ପଡ଼ିଥିଲି । ବର୍ତ୍ତମାନ ଉଚିତ ମୂଲ୍ୟ ଦେଇ ବୁଝିଲି ଖୋସାମୋଦିଆଙ୍କୁ ସାବଧାନ ! ମୋଭଳି ବୋକାର ବନ୍ଧୁ ହୋଇଥିବା ଯୋଗୁଁ ତମକୁ ବି ମୂଲ୍ୟ ଦେବାକୁ ପଡିଲା !"

ଦୁଇ ବନ୍ଧୁ ହସିଲେ ।





# କୂପମଣ୍ଡୂକ

କୃପାନନ୍ଦ ଥିଲେ ଗୁରୁକୂଳର ଆଚାର୍ଯ୍ୟ । ସେ ୬ ବର୍ଷର ଆଠମାସ ଶିଷ୍ୟମାନଙ୍କୁ ଶିକ୍ଷା ଦେଉଥିଲେ ଓ ବାକି ସମୟତକ ଦେଶ ପର୍ଯ୍ୟଟନ କରି ଲୋକମାନଙ୍କୁ ଉପଦେଶ ଦେଉଥିଲେ ।

ଥରେ ଗୋଟିଏ ଗାଁରେ ତାଙ୍କର ସଭାର ଆୟୋଜନ ହେଲା । ଧର୍ମ ଉପଦେଶ ଶୁଣିବାକୁ ଗ୍ରାମର ଆବାଳବୃଦ୍ଧବନିତା ସଭାରେ ଆସି ଯୋଗ ଦେଲେ ।

କୃପାନନ୍ଦ ସଭା ଆରମ୍ଭରେ ଭଜନ କଲେ । ତା'ପରେ ରାମଲୀଳା କୀର୍ତ୍ତନ କଲେ । ସମସ୍ତେ ତନ୍ମୟ ହୋଇ ଶୁଣୁଥା'ନ୍ତି । ହଠାତ୍ ଗାଁର ଶେଠ ଉଠି ଠିଆ ହେଲେ ।

କୃପାନନ୍ଦ ପ୍ରଶ୍ନ କଲେ, "କୁହନ୍ତୁ; ଆପଣଙ୍କର ଯଦି କିଛି ଶଙ୍କା ବା ସନ୍ଦେହ ଥାଏ । ଏବେ ରାମଗାଥା ଶୁଣି ନିଅନ୍ତୁ । ପରେ ଆପଣଙ୍କର ସମସ୍ୟାର ସମାଧାନ କରାଯିବ ।"

"ଏମିତି ତ ମୋ ମନରେ ବହୁତ ପ୍ରକାର ଶଙ୍କା ରହିଛି । ସବୁଠାରୁ ବଡ଼ ହେଲା ଘରର ଧନାଗାର ଚାକର ଦାୟିତ୍ୱରେ ଛାଡ଼ିବା ଉଚିତ୍ ହେବ କି ନାହିଁ ?" ଏତିକି ପଚାରି ଦେଇ ସଭାସ୍ଥାନ ଛାଡ଼ି ଚାଲିଗଲେ ।

ଗ୍ରାମବାସୀଙ୍କ ସକାଶେ ଇଏ କିଛି ନୂଆ କଥା ନ ଥିଲା । ସମସ୍ତେ ଜାଣନ୍ତି ଯେ ଧର୍ମ ଉପଦେଶ ଓ ଭଜନ ପ୍ରଭୃତି ଶେଠ ଏତେ ପସନ୍ଦ କରନ୍ତି ନାହିଁ । ମନ ତାଙ୍କର ସବୁବେଳେ ଥାଏ ଟଙ୍କା ଜମାଇବାରେ । କୃପାନନ୍ଦ ମଧ୍ୟ ସେକଥା ଉପରେ ଏତେ ଧ୍ୟାନ ଦେଲେ ନାହିଁ କାରଣ ସେ ଜାଣନ୍ତି ଅନେକ ଲୋକ ଏଇପରି ସଭା ମଝିରେ ଉଠି ଚାଲିଯା'ନ୍ତି । କିନ୍ତୁ କୃପାନନ୍ଦଙ୍କ ଶିଷ୍ୟ ଶେଖର ଏସବୁ ଦେଖି ଆଶ୍ଚର୍ଯ୍ୟ ହେଲା ଓ ଭାବିଲା କ'ଣ ଜଣେ ଧର୍ମସଭାରେ ଘଣ୍ଟାଏ



ସ୍ଥିର ହୋଇ ବସି ରହିବା ଏତେ କଷ୍ଟକର ବ୍ୟାପାର ?

ତେଣୁ ସଭା ଶେଷ ହେବା ମାତ୍ରେ ଶେଖର କୃପାନନ୍ଦଙ୍କୁ ପଚାରିଲା, "ଆପଣ ସେହି ଲୋକକୁ ଘରକୁ ଯିବାକୁ ମନା କଲେନାହିଁ କାହିଁକି ? ତା' ମନରେ ତ ତିଳେମାତ୍ର ଇଶ୍ୱର ବିଶ୍ୱାସ ନାହିଁ ବା ଧର୍ମଭାବ ନାହିଁ । ଆପଣଙ୍କ ଉପଦେଶ ଶୁଣିଥିଲେ ହୁଏତ ସେ ଆଧ୍ୟାତ୍ମିକ ଦିଗ ପ୍ରତି କିଛିଟା ତ ଆକୃଷ୍ଟ ହୋଇଥା'ନ୍ତା ।"

କୃପାନନ୍ଦ କହିଲେ, "ବତ୍ସ, ତୁମର ଚିନ୍ତା ପ୍ରଶଂସନୀୟ ଓ ତୁମର ପ୍ରସ୍ତାବ ମଧ୍ୟ ଠିକ୍ ବୋଲି ମୁଁ ସ୍ୱୀକାର କରୁଛି । ମାତ୍ର ତମେ ଜାଣିବା ଉଚିତ୍ ଯେ ସମାଜରେ ଏପରି ଲୋକ ମଧ୍ୟ ଅଛନ୍ତି ଯେଉଁମାନଙ୍କୁ ଧର୍ମ ବାଟରେ ନେବା ଅସମ୍ଭବ । ପଥର ଉପରକୁ ତୀର ମାରିବା ଯେପରି ମୂର୍ଖତା, ସାପକୁ ଦୁଧ ପିଆଇବା ଯେପରି ବ୍ୟର୍ଥ, ମରୁଭୂମିରେ ବୀଜ ବୁଣିବା ଯେପରି ବ୍ୟର୍ଥ, ସେହିପରି କେତେ ଲୋକଙ୍କ ନିକଟରେ ଧର୍ମ ଉପଦେଶ ବ୍ୟର୍ଥ ଓ ନିଷ୍ଫଳ । କୂପମଣ୍ଡୁକ ଯେପରି କୂପ ମଧ୍ୟରେ ଥାଇ ଭାବେ ସେଇଟାଇ ସାରା ଦୁନିଆ ସେହିପରି ସ୍ୱାର୍ଥପର ଲୋକମାନେ ସ୍ୱାର୍ଥ, ଧନ, ଶରୀରର ବିଳାସ ସବୁକୁ ଜୀବନର ଶ୍ରେଷ୍ଠ ଅଙ୍ଗ ବୋଲି ଜ୍ଞାନ କରନ୍ତି । ଧର୍ମ ଉପଦେଶ ବୀଜ ସଦୃଶ; ଦୟାଳୁ ଓ ଧାର୍ମିକ ଲୋକର ହୃଦୟ କ୍ଷେତ୍ରରେ ସେହି ବୀଜ ପଡିଲେ ତତ୍‌କ୍ଷଣାତ୍ ତାହା ଅଙ୍କୁରିତ ହେବ । ଯାହା ହୃଦୟରେ ଧର୍ମ ଉପଦେଶ ସକାଶେ ଶ୍ରଦ୍ଧା ନାହିଁ, ସେଥିରେ ଉପଦେଶ ଗୁଡିକ, ଊଷର ଭୂମିରେ ବୀଜ ପଡ଼ି ନଷ୍ଟ ହେବାପରି ନଷ୍ଟ ହୋଇଯିବ ।"

ତା'ପରେ କୃପାନନ୍ଦ ଚୁପ୍ ହୋଇଗଲେ, ଶିଷ୍ୟ ତନ୍ମୟ ହୋଇ ଗୁରୁଙ୍କ କଥା ଶୁଣୁଥା'ନ୍ତି । ସେ ହଠାତ୍ କହିଲେ, "କିନ୍ତୁ ଗୁରୁଦେବ, ଉପଦେଶ ଦ୍ୱାରହିଁ ତ ଶ୍ରଦ୍ଧା ଜାଗ୍ରତ ହୁଏ । ଶ୍ରଦ୍ଧା ଜାଗ୍ରତ କରିବା···

ଶିଷ୍ୟ କଥାର ଉଦ୍ଦେଶ୍ୟ ବୁଝିପାରି ଗୁରୁଦେବ କଥା ମଝିରେହିଁ କହି ଉଠିଲେ, "ବତ୍ସ, ଶ୍ରଦ୍ଧା ଭଗବାନଙ୍କ କୃପାରୁହିଁ ଜାତ ହୁଏ, ଯଦି ତାଙ୍କର କୃପା ଥାଏ ସେ ଏପରି

ପରସ୍ଥିତ ସୃଷ୍ଟି କରିବେ ଯେଉଁଥିରେ ଶ୍ରଦ୍ଧା ସ୍ୱାଭାବିକ ଭାବରେ ଜାଗ୍ରତ ହେବ । ସେଥିପାଇଁ ମନୁଷ୍ୟ ଜୀବନରେ ଦୁଃଖ କଷ୍ଟ ଆସେ । ଯଦି ଶ୍ରଦ୍ଧା ମୋଟେ ନଥାଏ ତ ଆମେ ଦେଉଥିବା ଧର୍ମଉପଦେଶ ବୃଥା ।"

"ମୋର ସହପାଠୀ ବୋଧାନନ୍ଦର ମଧ୍ୟ ଏହି ମତ, ଯଦି ଶୁଣିବାକୁ ଚାହଁ ତ ଶୁଣାଇବି।"

"କୃପାକରି କୁହନ୍ତୁ ଗୁରୁଦେବ ।" ଶିଷ୍ୟ କହିଲେ ।

"ତାହେଲେ ଶୁଣ, କାରଣ ବୋଧାନନ୍ଦ ମଧ୍ୟ ଏହିପରି ଧର୍ମ ଉପଦେଶ ଦେଇ ଦେଇ ସେଇ ଅଭିଜ୍ଞତାଟି ଲାଭ କରିଥିଲେ ।

ଥରେ ସେ ଧର୍ମ ଉପଦେଶ ଦେବାକୁ ଗୋଟିଏ ଗ୍ରାମକୁ ଯାଇଥା'ନ୍ତି । ଧର୍ମ ସଭାରେ ଶ୍ରୋତାମାନେ କହିଲେ କି ସେ ଗାଁରେ ଲାଲାବିନ୍ ନାମରେ ଜଣେ ଲୋକ ଅଛି ସେ ଏକ ନମ୍ବର ଠକ, ଚୋର, ଦଗାବାଜ, ବେଇମାନ, ଲୋଭୀ ଓ କଂଜୁସ୍ । ସେ ଜଣେ ବ୍ୟବସାୟୀ । ଲୋକମାନଙ୍କୁ ସବୁବେଳେ ଅଶୁଦ୍ଧ ଜିନିଷ ମିଶାଇ ବିକେ । ଆଉ ତଣ୍ଟି ଚପି ପଇସା ନିଏ । ଗରିବ ମାନଙ୍କୁ ଠକି ପଇସା ଜମାଏ । ଦାନ ଧର୍ମ ତ ଜୀବନରେ କରେନାହିଁ । ଉପଦେଶ ଶୁଣିବାକୁ ଆସେ ନାହିଁ; କାରଣ କାଳେ ସେଠାରେ ସତ କହିବାକୁ ହେବ ବା ଦୁଇପଇସା ଚାନ୍ଦା କେହି ମାଗିଦେବ ।

ଏସବୁ ଶୁଣି ବୋଧାନନ୍ଦ ପ୍ରବଳ ଉତ୍ସାହରେ କହିଲେ, "ମୋର କାମ ତ ଏଇପରି





ଅବାଟରେ ଯାଉଥିବା ଅଧର୍ମୀଙ୍କୁ ବାଟକୁ ଆଣିବା । ଯଦି ସେ ଏଠାକୁ ନ ଆସୁଛି ତ ତେବେ ମୋତେ ରାସ୍ତା ଦେଖାଇ ଦିଅ ମୁଁ ତା' ଘରକୁ ଯିବି ।"

ବୋଧାନନ୍ଦ ଲାଲଚନ୍ ଘରେ ପହଞ୍ଚିବା ମାତ୍ରେ ସେ ବୋଧାନନ୍ଦଙ୍କୁ ଖୁବ୍ ଭକ୍ତି ସହକାରେ ସ୍ୱାଗତ କଲା ଓ କହିଲା, "ମହାଶୟ, ମୁଁ ଆପଣଙ୍କ ଦର୍ଶନ ପାଇଁହିଁ ଅପେକ୍ଷା କରିଥିଲି । ଆପଣ ମୋ କୁଟୀରରେ ପଦାର୍ପଣ କରି ମୋତେ ଧନ୍ୟ କରି ଦେଇଛନ୍ତି । ମୁଁ ହୃଦୟରେ ଆପଣଙ୍କ ପାଖରେ ଖୁବ୍ କୃତଜ୍ଞ । ଆଶୀର୍ବାଦ କରନ୍ତୁ ମୋର ସୁଖ ସମୃଦ୍ଧିରେହିଁ ଦିନ ବିତିଯାଉ ।"

ଏକଥା ଶୁଣି ବୋଧାନନ୍ଦ କହିଲେ, "ବତ୍ସ ଈଶ୍ୱରଙ୍କ କୃପାରୁ ତୁମର କେଉଁ ଜିନିଷ ଊଣା ପଡ଼ିଛି ? ଏହାଠାରୁ ଅଧିକ ଧନ ଯେ ଚାହୁଁଛ ସେଇଟା ତ ଲୋଭ ଯୋଗୁ । ଦିନେ ନା ଦିନେ ତମେ ସଂସାର ଛାଡ଼ିଯିବ । ଏସବୁ ଧନଦୌଲତ ଏଇଠି ପଡ଼ିରହିବ । ଏସବୁ ଧନ ପାଇଁ ତମେ କେତେ ମିଛ କହୁଛ, କେତେ ଲୁଚାଚୋରି କରୁଛ । ସେସବୁର ଆବଶ୍ୟକତା କ'ଣ । ଯଦି ଧନ ବେଶି ହେଲା ତ ଦାନ ଧର୍ମରେ ଖର୍ଚ୍ଚ କର ।"

"କିନ୍ତୁ ମହାରାଜ, ଏପରି କଲେ ମୋର କ'ଣ ଲାଭ ହେବ ?"

ବୋଧାନନ୍ଦ ଭାବିଲେ ବ୍ୟବସାୟୀ ଲୋକଙ୍କୁ ବ୍ୟବସାୟୀ ଭାଷାରେ କହିବା ଉଚିତ୍ । ତେଣୁ ସେ କହିଲେ, "ଦାନ ପୁଣ୍ୟ କଲେ ଭଗବାନ୍ ସ୍ୱର୍ଗରେ ତୁମପାଇଁ ସ୍ଥାନ ସୁରକ୍ଷିତ ରଖିବେ । ଏହାଠାରୁ ହଜାର ଗୁଣ ସୁଖ ଅନନ୍ତ କାଳପାଇଁ ଦେଇ ପାରିବେ ।"

ଏଥିରେ ସନ୍ଦେହ କରି ଲାଲଚନ୍ କହିଲା, "କିନ୍ତୁ ମହାଶୟ, ମୋର ବ୍ୟବସାୟ ବହୁତ ଛୋଟ; ଏତକରେ ହିସାବ ରଖୁ ରଖୁ କେତେ ଭୁଲ୍ ହୋଇଯାଏ । ଏତେ ବଡ଼ ଦୁନିଆରେ ଗୋଟିଏ ନାମରେ ତ ଅନେକ ଜଣ ଲୋକ ଥିବେ । ତେବେ ମୋ ନାମରେ ଥିବା ଖାତାରେ ଯେତେ ଦାନ ଧର୍ମ କରିଥିବି, ସେଇ ନାମ ଥିବା ଅନ୍ୟ ଏକ ବ୍ୟକ୍ତିକୁ ସେଇଟା ଯେ ନ ମିଳିବ, ସେକଥା କିଏ କହିବ ?"

ଆପଣ କହିଲେ ଯେ ଦାନଧର୍ମ କଲେ ସ୍ୱର୍ଗରେ ସ୍ଥାନ ଖାଲି ରହିବ ମୋ ପାଇଁ । କିନ୍ତୁ ଏକଥା ବି ତ କେହି ଜାଣନ୍ତି ନାହିଁ ଯେ କିଏ କେବେ ମରିବ ଓ ମରି କୁଆଡ଼େ ଯିବ । ପୁଣି ଏକଥା ବି ହୋଇପାରେ ମୋର ନାମ ଥିବା ଅନ୍ୟ ଏକ ବ୍ୟକ୍ତି ମଧ୍ୟ ମୋ ଆଗରୁ ମରି ସେ ସ୍ଥାନ ସ୍ୱର୍ଗରେ ଦଖଲ କରିପାରେ । ତେଣୁ ମୋର ଦାନଧର୍ମ ତ ବୃଥା ।

ଏଠି ମୁଁ ନିଜର ବ୍ୟବସାୟ ଦେଖାଶୁଣା କରି ମଧ୍ୟ ଚାକର-ବାକର କେତେ ଠକୁଛନ୍ତି । ଭଗବାନଙ୍କ ଦୁନିଆ ତ କେତେ ବିରାଟ । ଆଉ ସେଥିପାଇଁ କେତେ ଚାକର-ବାକର ରହିଥିବେ । ତେଣୁ ସେଠାର କାର୍ଯ୍ୟରେ ଅନେକ ବିଭ୍ରାଟ ହେବା ସ୍ୱାଭାବିକ । ତେଣୁ ମହାଶୟ, ସବୁଠାରୁ ଭଲ ହେବ ମୁଁ ଯେତେବେଳେ ମରି ସ୍ୱର୍ଗକୁ ଯିବି, ନିଜେ ବରଂ ଭଗବାନଙ୍କ ସହିତ କଥାବାର୍ତ୍ତା କରି ସ୍ଥାନଟିଏ ନିଜପାଇଁ କରାଇ ନେବି । ସେ ବିଷୟରେ ଆପଣଙ୍କର ଚିନ୍ତା କରିବାର କୌଣସି ପ୍ରୟୋଜନ ନାହିଁ ।”

ବୋଧାନନ୍ଦ ଏସବୁ କଥା ଶୁଣୁଥା'ନ୍ତି । ବିଚରା ବୋଧାନନ୍ଦ ଉପଦେଶ ଦେବାକୁ ଗଲେ ଓ ସେଠାରେ ଲାଲାଚାନ୍ଦର ଉପଦେଶ ଶୁଣିବାକୁହିଁ ପଡ଼ିଲା । ସେ କେବଳ ଭାବିବାକୁ ଲାଗିଲେ ଏଭଳି ବିତଣ୍ଡା ତର୍କର ଉତ୍ତର କିପରି ସେ ଦେବେ । ସେ ଭାବି ଭାବି ଠିକ୍ କଲେ ଲାଲାଚାନ୍ଦର ଜ୍ଞାନ ବିଚାର ସବୁ କୂପ-ମଣ୍ଡୁକର ଜ୍ଞାନ ପରି କୂପ ମଧ୍ୟରେହିଁ ସୀମିତ ଓ ଆବଦ୍ଧ । ସେ ଧନର କୂପମଧ୍ୟରୁ ବାହାରକୁ ଆସିବାକୁ ବି ଚାହେଁ ନାହିଁ । ତା' ଉପରେ ଭଗବାନଙ୍କ କୃପା ବୋଧେ ଊଣା ଅଛି ସେଥିପାଇଁ ଶ୍ରଦ୍ଧା ଓ ବିଶ୍ୱାସର ଝରଣା ବାହାରି ନାହିଁ । ଶେଷରେ ବୋଧାନନ୍ଦ ଭାବିଲେ ଯେ ଏପରି ଗଣ୍ଡମୂର୍ଖ ପଛରେ ସମୟ ନଷ୍ଟ କରିବା ଆହୁରି ମୂର୍ଖତା । ଏକଥା ଭାବି ସେ ତାକୁ ଛାଡ଼ି ଅନ୍ୟ ଗ୍ରାମକୁ ଚାଲିଗଲେ ।






# ମାନସିକ ବ୍ୟାଧି

ନିରଞ୍ଜନର ସ୍ତ୍ରୀ ପ୍ରଭାର ଦେହ ସବୁବେଳେ ଅସୁସ୍ଥ ରହୁଥାଏ । ଧିରେ ଧିରେ ସେ ଦୁର୍ବଳ ହୋଇଗଲା ଓ ଶେଷକୁ ଶଯ୍ୟାଶାୟୀ ହୋଇଗଲା । ନିରଞ୍ଜନ ଅନେକ ବୈଦ୍ୟ ଡାକ୍ତର ଦେଖାଇଲା; କିନ୍ତୁ କେଉଁଥିରେ କିଛି ହେଲାନାହିଁ । ସେ ନିରାଶ ହୋଇଥାଏ ।

ପାଖ ଗାଁରେ ଜଣେ ବଡ଼ ଜ୍ୟୋତିଷ ଥା'ନ୍ତି । ଯିଏ କିଛି ଦକ୍ଷିଣା ଓ ପୂଜା ପ୍ରସାଦ ନେଇ ଯାଏ, ତାକୁ ଜ୍ୟୋତିଷ ତା'ର ମନଜାଣି, ତା'ର ସମସ୍ୟାର ସମାଧାନ କରି ଦେଇଥା'ନ୍ତି । ଯଦି ପ୍ରଥମଥର ତା'ଙ୍କ କଥା କେହି ବୁଝି ନପାରେ ତେବେ ସେ ରାଗିଯା'ନ୍ତି ଓ ଗାଳି-ଗୁଲଜ କରି ପୁଣି ଦ୍ୱିତୀୟଥର ବୁଝାଇ ଦିଅନ୍ତି । ନିରଞ୍ଜନର ଭୟ ଥାଏ କାଳେ ଜ୍ୟୋତିଷ ସମସ୍ତଙ୍କ ଆଗରେ ତାକୁ ଗାଳି ଦେବେ ଯେଉଁଥିରେ କି ତା'ର ସମ୍ମାନରେ ଆଞ୍ଚ ଆସିବ । କିନ୍ତୁ ସ୍ତ୍ରୀର ଅବସ୍ଥା ବହୁତ ଖରାପ ହେବାରୁ ସେ ବାଧ୍ୟ ହୋଇ ଜ୍ୟୋତିଷଙ୍କ ପାଖକୁ ଗଲା ।

ତାକୁ ଦେଖିବା ମାତ୍ରେହିଁ ଜ୍ୟୋତିଷ କହିଲେ, "ତୁମର ନାମ ନିରଞ୍ଜନ? ତୁମ ସ୍ତ୍ରୀ ଶଯ୍ୟାଶାୟୀ ଅଥଚ ନିଜର ଅହଂକାର ଯୋଗୁ ତମେ ଏ ପର୍ଯ୍ୟନ୍ତ ଏଠାକୁ ଆସି ନଥିଲ?"

ତା'ପରେ ସେ ଯାହା ସବୁ କହିଲେ ନିରଞ୍ଜନ ଦେଖିଲା ସବୁ ସତ କହୁଛନ୍ତି ଓ ସିଧା ସିଧା କହୁଛନ୍ତି । ମନେ ମନେ ଟିକିଏ ଡରିଗଲା । ତା'ପରେ ସେ ବିନୟପୂର୍ବକ ନିବେଦନ କଲା, "ମହାଶୟ ଆପଣ ସବୁ ସତ କହିଛନ୍ତି । ବର୍ତ୍ତମାନ ରୋଗ ଉପଶମର ଉପାୟ କୃପା କରି କହି ଦିଅନ୍ତୁ । କାରଣ ଔଷଧରେ ସେ ରୋଗ ଭଲ ହେଲାନାହିଁ ।"

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ



"ମୁଁ ଜାଣେ ସବୁ । ସେଥିପାଇଁ ତ ନିରାଶ ହୋଇ ମୋ ପାଖକୁ ଆସିଛ । ତୁମ ସ୍ତ୍ରୀର କୌଣସି ରୋଗ ନାହିଁ । ତମେ ପ୍ରକୃତିର ସହଜ ପ୍ରବାହ ବନ୍ଦ କରିବାକୁ ଯାଇ ଗୋଟିଏ ବଡ଼ ବନ୍ଧ ବାନ୍ଧିଛ । ସେଇଟିକ ଭାଙ୍ଗିଦିଅ । ତୁମର ପତ୍ନୀର ସ୍ୱାସ୍ଥ୍ୟ ଭଲ ହୋଇଯିବ । ଔଷଧ କିଣିବାରେ ପଇସା ଢାଳିଲେ କିଛି ହେବ ନାହିଁ ।" ଏତିକି କହିସାରି ସେ ବଡ଼ ପାଟିରେ ଟିକିଏ କହିଲେ, "କ'ଣ ମୁଁ ଯାହା କହିଲି କିଛି ମୁଣ୍ଡରେ ପଶିଲା ?"

ନିରଞ୍ଜନ ତାଙ୍କ କଥାରୁ ତିଳେହେଲେ ବୁଝିପାରିଲା ନାହିଁ । କିନ୍ତୁ ତାଙ୍କର ଗାଳି-ଗୁଲଜକୁ ଡ଼ରି କିଛି ନ ବିଚାରି ମୁଣ୍ଡ ହଲାଇ "ଆଜ୍ଞା, ହଁ" ବୋଲି କହିଦେଲା ।

ଘରେ ପହଞ୍ଚି ଜ୍ୟୋତିଷଙ୍କ କଥା ଭାବିବାକୁ ଲାଗିଲା । କିଛି କୂଳ କିନାରା ପାଇଲା ନାହିଁ । ବହୁତ ସମୟ ଭାବିବାରୁ ତା'ର ଗୋଟାଏ କଥା ମନେ ପଡ଼ିଲା । ଗତବର୍ଷ କେନାଲ୍‌ରୁ ପାଣି ସେ ନିଜ କ୍ଷେତକୁ ଆଣି ବନ୍ଧ ପକାଇ ଦେବାରୁ ପଡ଼ୋଶୀ ବଇଜୁ ସିଂର ଜମି ଶୁଖିଲା ପଡ଼ିଲା । ତେଣୁ ନିରଞ୍ଜନ ଭାବିଲା, "କେନାଲ ପାଣି ପ୍ରକୃତିର ସହଜ ପ୍ରବାହ ସେଥିରେ ସମସ୍ତଙ୍କର ଅଧିକାର ଅଛି । ମୁଁ କେବଳ ତା' ସହିତ ଶତ୍ରୁତା କରି ପାଣି ବନ୍ଦ କରି ଦେଇଥିଲି । ମୋ କ୍ଷେତ ଛଡ଼ା ସେ ଅନ୍ୟ ବାଟେ ପାଣି ଦେବାର ଉପାୟ ନାହିଁ । ସୁତରାଂ ମୋର ନିଶ୍ଚୟ ଭୁଲ୍ ହୋଇଛି । ଏଇକଥା ବୋଧହୁଏ ଜ୍ୟୋତିଷ କହିଲେ ଯେ ପ୍ରାକୃତିକ ପ୍ରବାହକୁ ବନ୍ଦ କରିବା ଉଚିତ୍ ନୁହେଁ ।"

ମନ ଭିତରେ ଏପରି ବିଚାର ଆସିବା ମାତ୍ରେ ସେ ବଇଜୁ ସିଂକୁ ଡ଼କେଇ ପଠାଇଲା । ବଇଜୁ ସିଂ ଆସିବାରୁ ତାକୁ ସେ କହିଲା, "ଗଲାବର୍ଷ ତୁମ ଜମିରେ ପାଣି ନ ଯିବାପାଇଁ ମୁହିଁ ବନ୍ଧ କରି ଦେଇଥିଲି । ସେଥିପାଇଁ ଏବେ ମନସ୍ତାପ କରୁଛି । ଏପରି ଛୋଟ ଛୋଟ କଥା ଜୀବନରେ ଘଟିଥାଏ, ପୁଣି ସେ ସମୟ ଚାଲିଗଲେ ମନ ନିଜର ଦୋଷତ୍ରୁଟି ଯୋଗୁ ଛଟପଟ କରେ । ପୁଣି ମିଳମିଶା ହେବାକୁ

ହେଲେ ଜଣକୁ କିଛି ନା କିଛି ତ୍ୟାଗ କରିବାକୁ ହୁଏ । ଏବେ ତୁମେ ସେକଥା ଭୁଲିଯାଅ । ଯାହା ହୋଇଯାଇଛି ଯାଇଛି, ଆଉ ସେପରି ହେବନାହିଁ । ଏବେ ତୁମେ ମୋର ବନ୍ଧୁ ।" ଏକଥା କହି ସେ ଗୃକରଙ୍କୁ ଡ଼ାକି ବନ୍ଧ କଟାଇ ଦେଲା । ବଜୁ ସିଂହ ମଧ୍ୟ ଖୁସି ହୋଇ ଘରକୁ ଫେରିଲା ।

ଏବେ ନିରଞ୍ଜନ ଭାବିଲା ଜ୍ୟୋତିଷଙ୍କ କଥା ଅନୁସାରେ କାମ ତ ହୋଇଛି ଏବେ ପ୍ରଭା ଭଲ ହୋଇଯିବ । କିନ୍ତୁ ଭଲ ହେବାର କିଛି ଲକ୍ଷଣ ଦେଖାଗଲା ନାହିଁ । ତେଣୁ ସେ ଭାବିଲା ବୋଧହୁଏ ଜ୍ୟୋତିଷଙ୍କ କଥା ସେ ଭଲଭାବରେ ବୁଝି ପାରିନାହିଁ । ନିଜେ ନିଜେ ବହୁତ ପ୍ରକାରରେ ବୁଝିବାକୁ ଚେଷ୍ଟା କରି କିଛି ଯେତେବେଳେ ବୁଝିପାରିଲା ନାହିଁ, ଭାବିଲା ଆଉ ଥରେ ଜ୍ୟୋତିଷଙ୍କ ପାଖକୁ ଯିବ । ସେ ଗଲା ଓ ଜ୍ୟୋତିଷ ତାକୁ ଦେଖୁ ଦେଖୁ କହିଲେ, "ତମେ ପୁଣି ଆସିଛ? ବୋଧହୁଏ ମୋ କଥା ଠିକ୍ ଭାବରେ ଧରି ପାରିଲ ନାହିଁ । ଆଚ୍ଛା ଏଥର ଶୁଣ ।

"ତୁମେ ତୁମର ମିଥ୍ୟା ସମ୍ମାନ ବଜାୟ ରଖିବା ପାଇଁ ତୁମ ସ୍ତ୍ରୀକୁ ତା'ର ବାପଘରକୁ ପଠାଉନାହିଁ । ତା'ର ନିଜ ବାପମା'ଙ୍କ ପ୍ରତି ଥିବା ସ୍ନେହ ଶ୍ରଦ୍ଧାର ସହଜ ପ୍ରବାହକୁ ତମେ ରୋକି ଦେଉଛ ବୋଲି ତା' ମନ ଭିତରେ ବହୁତ ଦୁଃଖ । ସେଥିପାଇଁ ସେ ଭୋଗୁଛି । ମାନସିକ ବେଦନାହିଁ ଶରୀର କଷ୍ଟର କାରଣ । ତେଣୁ ତାକୁ କିଛିଦିନ ପାଇଁ ତା' ବାପଘରକୁ ନେଇଯାଅ ଓ ବୁଲାଇ ନେଇ ଆସ ଦେଖିବ ସେ ସଂପୂର୍ଣ୍ଣ ଆରୋଗ୍ୟହୋଇଯିବ ।"

ନିରଞ୍ଜନ ଏଥର ସହଜରେ ସବୁ କିଛି ବୁଝିଗଲା ଓ ସେହିପରି କଲା । ପ୍ରଭା ତା'ର ବାପ ମା', ଭାଇ ଓ ଭଉଣୀଙ୍କ ସହିତ ମିଳିତ ହୋଇ ସେଠାରେ କିଛିଦିନ ରହି ପୁଣି ଶାଶୁଘରକୁ ଫେରିଲା । ସେତେବେଳକୁ ସେ ସଂପୂର୍ଣ୍ଣ ସୁସ୍ଥ ହୋଇ ଯାଇଥିଲା ।





# ବିଷ୍ଣୁ ପୁରାଣ

ବିଷ୍ଣୁ ତ ଶ୍ରୀମତୀଙ୍କୁ ନେଇ ବୈକୁଣ୍ଠ ଚାଲିଗଲେ । ନାରଦ ବା ପର୍ବତ ଋଷି ବୁଝିପାରିଲେ ନାହିଁ ଘଟଣାଟା ଏପରି କାହିଁକି ଘଟିଲା । ଦୁହେଁ ଯେତେବେଳେ ଉପଲବ୍ଧି କଲେ ଯେ ଦୁହିଁଙ୍କର ମୁଖ ବିକୃତ ରୂପ ଧାରଣ କରିଛି ପରସ୍ପର ପ୍ରତି ଇର୍ଷ୍ୟା ଭାବ ଯୋଗୁ, ଲଜ୍ଜାରେ ଓ କ୍ରୋଧରେ ସେମାନେ ହତଜ୍ଞାନ ହୋଇଗଲେ ।

ଦୁହେଁ ଯାଇ ବୈକୁଣ୍ଠରେ ପହଞ୍ଚିଲେ ଓ ଶ୍ରୀମତୀଙ୍କୁ ସେଠାରେ ଦେଖି ଆତୁର ହୋଇଗଲେ । ଶ୍ରୀବିଷ୍ଣୁଙ୍କୁ ତେଣୁ ନାରଦ ଅଭିଶାପ ଦେଇ କହିଲେ, "ଯେଉଁ ଶ୍ରୀମତୀଙ୍କୁ ଆପଣ କୌଶଳ କରି ଅନ୍ୟ ମାନଙ୍କୁ ଠକାଇ ପାଇଲେ ସେ ଅପହୃତା ହୋଇଯିବେ ଓ ଆପଣ ପତ୍ନୀ ବିଚ୍ଛେଦରେ ବହୁ କଷ୍ଟ ଭୋଗିବେ । ମୋତେ ଯେଉଁ ମର୍କଟ ରୂପ ଦେଇ ଅପମାନିତ କରିଛନ୍ତି ସେଇ ମର୍କଟ ମାନଙ୍କର ସାହାଯ୍ୟ ନେଇ ଆପଣ ସ୍ତ୍ରୀଙ୍କୁ ଉଦ୍ଧାର କରିବେ ।"

ନାରଦଙ୍କ ଅଭିଶାପ ଶୁଣି ଶ୍ରୀବିଷ୍ଣୁ ହସିବାକୁ ଲାଗିଲେ । ଶ୍ରୀମତୀ ନିଜର ରୂପ ଅର୍ଥାତ୍ ଲକ୍ଷ୍ମୀରୂପ ନେଇ ଦେଖାଦେଲେ ଓ ଶ୍ରୀବିଷ୍ଣୁ ନାରଦ ଓ ପର୍ବତ ଋଷିଙ୍କ ଚକ୍ଷୁମଧ୍ୟରୁ ମାନୁଷୀମାୟା ଅପସାରିତ କରିଦେଲେ । ଦୁହେଁ ଶ୍ରୀବିଷ୍ଣୁ ଓ ଶ୍ରୀଲକ୍ଷ୍ମୀଙ୍କ ଚରଣରେ ପ୍ରଣାମ କରି କ୍ଷମା ପ୍ରାର୍ଥନା କଲେ ।

ନାରଦଙ୍କ ମନରେ ଗ୍ଲାନିବୋଧ ଆସିବାରୁ ସେ କାନ୍ଦି କାନ୍ଦି ବହୁତ ପଶ୍ଚାତାପ କଲେ । ଶ୍ରୀବିଷ୍ଣୁ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ,

୧୦. ଦୁର୍ବାସା ଗର୍ବଭଙ୍ଗ



"ତମେ ତ ତ୍ରିକାଳଦର୍ଶୀ, ତମେ ଜାଣ ଭବିଷ୍ୟତରେ କ'ଣ ହେବ । ତେଣୁ ଏତେ ଦୁଃଖ କରିବାର କ'ଣ ଅଛି ? ତୁମର ଅଭିଶାପ ମୋର ସଂକଳ୍ପରୁହିଁ ଉତ୍ପନ୍ନ । ତୁମର ଅଭିଶାପ ରାମ ଅବତାରରେ କାମ କରିବ ଏବଂ ତଦ୍ୱାରା ପୃଥିବୀର ଲୋକମାନଙ୍କର କଲ୍ୟାଣ ସାଧନ ହେବ ।"

ଏସବୁ ପରେ ସୁତମୂନି କହିବାକୁ ଆରମ୍ଭ କଲେ ସେଇ ଇକ୍ଷ୍ୱାକୁ ବଂଶର ଭକ୍ତ ରାଜା ଅମ୍ବରୀଷ ଓ ଦୁର୍ବାସା ଋଷିଙ୍କ କାହାଣୀ ।

ଦିନେ ଦୁର୍ବାସା ଋଷିଙ୍କ ଆଶ୍ରମରେ ଦେବର୍ଷି ନାରଦ ଆସି ପହଞ୍ଚିଲେ । ଦୁର୍ବାସା ଥଟ୍ଟା କରି କହିଲେ, "ଆଜି ତ ମୁଖ ବଡ଼ ପ୍ରସନ୍ନ ଦିଶୁଛି । କ'ଣ କଳହରେ ପେଟ ପୂର୍ଣ୍ଣ ହୋଇ ଯାଇଛି କି ?"

ନାରଦ ଋଷିଙ୍କୁ ଅଭିବାଦନ କରି କହିଲେ, "ଏପରି ଭୋଜନ ତ ଏବେ ମିଳୁନାହିଁ, ସେଥିପାଇଁ ବହୁତ ଶୋକ ଲାଗୁଛି । କିନ୍ତୁ ଏବେ ପରମଭକ୍ତ ରାଜା ଅମ୍ବରୀଷଙ୍କ ପାଖରୁ ଆସିଲି । ସତରେ ତାଙ୍କ ଭକ୍ତି ଦେଖି ମନ, ପ୍ରାଣ ଆନନ୍ଦରେ ପୂରି ଉଠୁଛି ।"

ଅମ୍ବରୀଷଙ୍କ ପ୍ରଶଂସା ଶୁଣି ଦୁର୍ବାସା ଟିକିଏ ଗମ୍ଭୀର ଦେଖାଗଲେ । ତା'ପରେ ସେ ପଚାରିଲେ, "କ'ଣ ଅମ୍ବରୀଷ ଏତେ ବଡ଼ ଭକ୍ତ ଯେ ତାଙ୍କୁ ଦେଖିବା ମାତ୍ରେ ତୁମ ମନ ଆନନ୍ଦରେ ପୂରି ଉଠିଲା ?"

"ନିଃସନ୍ଦେହରେ କହିପାରେ ଯେ ଭଗବାନ୍ ବିଷ୍ଣୁଙ୍କର ବିଶେଷ କୃପା ନ ଥିଲେ ଏଭଳି ଭକ୍ତ ସେ ହୋଇ ପାରନ୍ତେ ନାହିଁ । ଅଦ୍ୱିତୀୟ ଭକ୍ତ । ସେ ରାଜା ହୋଇ ବି ମହାନ୍ ଋଷି । ତାଙ୍କୁ ଦର୍ଶନ କଲେ ଆପଣ ମଧ୍ୟ ମୋ କଥାର ସତ୍ୟତା ଉପଲବ୍‌ଧି କରିପାରିବେ । ସେ ଜଣେ ମହାନ ବ୍ୟକ୍ତି ଓ ଶ୍ରୀବିଷ୍ଣୁଙ୍କର ପରମପ୍ରିୟ ଭକ୍ତ । ଆପଣଙ୍କୁ ଦର୍ଶନ କଲେ ସେ ନିଜକୁ କୃତାର୍ଥ ମନେ କରିବେ ।" ଏତିକି କହି "ନାରାୟଣ" "ନାରାୟଣ" ଜପୁ ଜପୁ ନାରଦ ଅନ୍ତର୍ଦ୍ଧାନ ହୋଇଗଲେ ।

ନାରଦଙ୍କ କଥା ଆଉ ଦୁର୍ବାସାଙ୍କ ମନରୁ ଯାଉନାହିଁ । ସେ ଭାବିଲେ, "ଦେଖିବି ସେ



କେତେ ବଡ଼ ଭକ୍ତ । ମୁଁ ତାଙ୍କୁ ପରୀକ୍ଷା କରିବି ।" ତା'ପରେ ସେ ରାଜା ଅମ୍ବରୀଷଙ୍କୁ ଦେଖିବା ପାଇଁ ଚାଲିଲେ ।

ରାଜା ଏକାଦଶୀ ଓ ଦ୍ୱାଦଶୀ ବ୍ରତ ଖୁବ୍ ନିୟମ ସହକାରେ ପାଳନ୍ତି । ବ୍ରତ ପାରଣା ପୂର୍ବରୁ ସେ ଶୁଣିଲେ ଦୁର୍ବାସା ଋଷି ଆସୁଛନ୍ତି । ଦୁର୍ବାସା ପହଞ୍ଚିବା ମାତ୍ରେ ସେ ତାଙ୍କୁ ପାଦ୍ୟ ଓ ଅର୍ଘ୍ୟ ନେଇ ପୂଜା କଲେ ଓ ପ୍ରସାଦ ସେବନ କରିବାକୁ ଅନୁରୋଧ କଲେ ।

ଦୁର୍ବାସା ପ୍ରସାଦ ସେବନର ନିମନ୍ତ୍ରଣ ସ୍ୱୀକାର କରି ସ୍ନାନ କରିବାକୁ ଗଲେ । ସେଇ ଯେ ଗଲେ ଆଉ ଫେରୁ ନାହାନ୍ତି । ଅମ୍ବରୀଷ ତାଙ୍କ ପାଇଁ ଅପେକ୍ଷା କରି କରି ଦେଖିଲେ ବ୍ରତ ଉଦ୍‌ଯାପନର ସମୟ ହୋଇ ଯାଉଛି । ଆଉ ସେ ଯଦି ପାରଣା ନ କରନ୍ତି ତେବେ ପାପ ହେବ । ଏଣେ ଦୁର୍ବାସା ମଧ୍ୟ ରାଗିବେ । ସେ କିଂକର୍ତ୍ତବ୍ୟବିମୂଢ଼ ହୋଇ ବ୍ରାହ୍ମଣ, ପୁରୋହିତ ଓ କୁଳଗୁରୁ ପ୍ରଭୃତିଙ୍କୁ ପଚାରିଲେ । ସମସ୍ତେ ସମସ୍ୱରରେ କହିଲେ ଯେ ଆଉ ଅପେକ୍ଷା ନ କରି ପ୍ରସାଦ ସେବନ କରିବାକୁ, ରାଜା ପ୍ରସାଦ ସେବନ ନ କରି କେବଳ ପୂଜାଜଳ ମାତ୍ର ମୁଖରେ ଦେଇଛନ୍ତି ଏଇ ସମୟରେ ଦୁର୍ବାସା ସ୍ନାନ କରି ଆସି ପହଞ୍ଚିଲେ ।

ସେ ତାଙ୍କୁ ଏପରି ଅବସ୍ଥାରେ ଦେଖି କ୍ରୋଧରେ ଜଳିଗଲେ ଓ ତିରସ୍କାର କରି କହିଲେ, "ଆରେ ନୀଚ, ପାପୀ, ଅଧର୍ମୀ ରାଜା, ତୁ ନିଜକୁ ବିଷ୍ଣୁଙ୍କର ପରମ ଭକ୍ତ ବୋଲଉଛୁ ? ତୁ ମୋତେ ନିମନ୍ତ୍ରଣ କରି ନିଜେ ଭୋଜନ କଲୁ । ତୁ ମୋତେ ଏପରି ଅପମାନ କରିବାକୁ ସାହସ କଲୁ ବା କିପରି ? ମୋର ନାମ ପଡ଼ିଲେ ତିନିଲୋକ ଓ ଦେବତାମାନେ ମଧ୍ୟ ଭୟରେ ଥରହର । ଏବେ କାଳରୂପୀ ମୋର ଅଭିଶାପଠାରୁ ତୋତେ କେହି ରକ୍ଷା କରିବେ ନାହିଁ ।"

ଦୁର୍ବାସାଙ୍କର କ୍ରୋଧାଗ୍ନିରେ ଅମ୍ବରୀଷ ବିଚଳିତ ନ ହୋଇ ତାଙ୍କ ସମ୍ମୁଖରେ ମଥା ନତ କରି କହିଲେ, "ପଣ୍ଡିତମାନଙ୍କ ପରାମର୍ଶ ଅନୁସାରେ, ବ୍ରତଭଙ୍ଗ ଭୟରେ ବେଦର



ନିୟମାନୁଯାୟୀ କେବଳ ଜଳପାରଣା ମାତ୍ର କରିଛି । ମୁଁ ଏବେ ମଧ୍ୟ ଭୋଜନ ନକରି ଆପଣଙ୍କ ପ୍ରତୀକ୍ଷାରେହିଁ ରହିଛି । ଭୁଲ ଥିଲେ କ୍ଷମା କରନ୍ତୁ ।"

"କ୍ଷମା ? ଦୁର୍ବାସା କ୍ଷମା କରିବା କେବେ ଜୀବନରେ ଶିଖିନାହିଁ । ତୁ ତୋର ପାପର ଫଳ ଅଚିରେ ଭୋଗ କରିବୁ ଏବଂ ତା' ପରେ ତୁ ଉପଲବ୍ଧି କରିବୁ ତପସ୍ୟା ବଡ଼ ନା ଭକ୍ତି ବଡ଼ ।" ଗର୍ଜି ଗର୍ଜି କହିଲେ ଦୁର୍ବାସା । କୁହାଯାଏ ଦୁର୍ବାସାଙ୍କର ତପଃଶକ୍ତି ତାଙ୍କ ଜଟାରେ ଥାଏ । ଯେତେବେଳେ ସେ କ୍ରୋଧବଶତଃ ଜଟା ଟାଣନ୍ତି ସେତେବେଳେ ତପସ୍ୟା ଶକ୍ତିଗୁଡ଼ିକ କ୍ରମେ କ୍ରିୟାଶୀଳ ହୋଇ ଉଠନ୍ତି ଓ ତାଙ୍କର ଇଚ୍ଛା ଅନୁସାରେ କାର୍ଯ୍ୟ କରନ୍ତି ।

ସେ କ୍ରୋଧର ଆବେଶରେ ନିଜର ଏକ ଲମ୍ବା ଜଟାକୁ ଜୋର୍‌ରେ ଝାଡ଼ି ଝାଡ଼ି ଯୋଗ-ଦଣ୍ଡକୁ ସ୍ପର୍ଶ କଲେ । ବାସ୍ । ଆଖି ପିଛୁଳାକେ ଆକାଶରୁ ଅଗ୍ନିକଣା ବର୍ଷିବାକୁ ଲାଗିଲା ଓ ଆକାଶ କଳା ଧୂଆଁରେ ଭରିଗଲା । ସେଇ କଳାଧୂଆଁ ଭିତରୁ ରୂପ ନେଲା ଏକ ବିକଟାଳ ରାକ୍ଷସ; ତା'ର ନାମ ଥିଲା କୃତ୍ୟା ।

ପ୍ରକଟ ହେବା ମାତ୍ରେହିଁ କୃତ୍ୟା ଅମ୍ବରୀଷଙ୍କୁ ମାରିବାକୁ ଉଠିଲା । ତା' ପୂର୍ବରୁ ଶ୍ରୀବିଷ୍ଣୁଙ୍କର ସୁଦର୍ଶନ ଚକ୍ର ଆସି ଅଗ୍ନିବର୍ଷଣ କରି କୃତ୍ୟାକୁ ସଂପୂର୍ଣ୍ଣ ରୂପେ ଭସ୍ମ କଲା । ଏ ଦୃଶ୍ୟ ଦେଖି ଦୁର୍ବାସା ଆଶ୍ଚର୍ଯ୍ୟ ହୋଇଗଲେ । ସୁଦର୍ଶନ ଚକ୍ର କୃତ୍ୟାକୁ ମାରିବା ପରେ ଦୁର୍ବାସାଙ୍କ ଆଡ଼େ ଦୌଡ଼ିଲା । ଦୁର୍ବାସା ଆଉରି ଗୋଟିଏ ଜଟା ଛିଡ଼ାଇ ସୁଦର୍ଶନଚକ୍ର ଉପରକୁ ଫୋପାଡ଼ିଲେ । ତାହା ସୁଦର୍ଶନ ଚକ୍ରକୁ ନିଜ ରାସ୍ତାରେ ଯିବାପାଇଁ ବାଧା ସୃଷ୍ଟି କଲା । କିନ୍ତୁ ପରେ ସେ ବାଧା ଛିନ୍ନଛିନ୍ନ ହୋଇ ପଡ଼ିବାରୁ ପୁଣି ଦୁର୍ବାସା ଅନ୍ୟ ଏକ ଜଟା ଛିଡ଼ାଇ ଚକ୍ର ଉପରକୁ ପକାଇଲେ । ସେଥିରେ ଆକାଶ ଘୋର ଅନ୍ଧକାରରେ ଆଚ୍ଛନ୍ନ ହେଲା । ମନେହେଲା ଚକ୍ର ଯେପରି କେଉଁଠି ହଜିଗଲା । କିନ୍ତୁ ପରକ୍ଷଣରେହିଁ ଚକ୍ର ନିଜର କିରଣ ଦ୍ୱାରା ସେହି ପ୍ରଳୟ ଅନ୍ଧକାରକୁ ନିବାରିତ କରି

ଝଲମଲ କରି ଉଠିଲା ଓ ପୁଣି ଦୁର୍ବାସାଙ୍କୁ ଗୋଡ଼ାଇଲା । ଚକ୍ର ନିକଟତର ହୁଅନ୍ତେ ତାଙ୍କର ଜଟାଗୁଡିକ ସବୁ ଜଳିଗଲା ଓ ତତ୍‌ସହିତ ତାଙ୍କର ସମସ୍ତ ତପୋବଳ ମଧ୍ୟ ନଷ୍ଟ ହୋଇଗଲା ।



ଚକ୍ର ଗୋଡ଼ାଇଥାଏ । ସେ ତିନିଲୋକ ଦୌଡି ଦୌଡ଼ି ଶେଷରେ ଯାଇ ବ୍ରହ୍ମଲୋକରେ ପହଞ୍ଚିଲେ । ସେଠି ନାରଦଙ୍କ ସହିତ ପୁଣି ତାଙ୍କର ଦେଖା ହେଲା । ଦୁର୍ବାସା ଦୌଡ଼ି ପଳାଇବାର ଦେଖି ସେ ଅଳ୍ପ ହସି ପଚାରିଲେ, "ଏତେ ତରବର ହୋଇ ଆପଣ କୁଆଡ଼େ ଯାଉଛନ୍ତି ?" କିନ୍ତୁ ତାଙ୍କ ପ୍ରଶ୍ନର ଉତ୍ତର ଦେବାକୁ ମଧ୍ୟ ଦୁର୍ବାସାଙ୍କର ଅବସର ନଥିଲା । ସେ ପଛରେ ଅନୁଧାବନ କରୁଥିବା ଚକ୍ରକୁ ଶଙ୍କିତ ଚକ୍ଷୁରେ ଚାହିଁ ଆହୁରି ଜୋରରେ ଯାଇ ସିଧା ବ୍ରହ୍ମାଙ୍କ ଚରଣରେ ପଡ଼ି ରହିଲେ ।

"ମୋତେ ରକ୍ଷା କରନ୍ତୁ ବ୍ରହ୍ମଦେବ । ସୁଦର୍ଶନଚକ୍ର ମୋ ପଛରେ ଗୋଡ଼ାଇଛି ।"

ବ୍ରହ୍ମା ନିଜର ଅସହାୟତା ପ୍ରକାଶ କରି କହିଲେ, "ଋଷିବର, ତମେ ତ ଜାଣିଛ ଯେ ମୁଁ ନିଜେ ଶ୍ରୀବିଷ୍ଣୁଙ୍କ ନାଭିକମଳରୁ ସୃଷ୍ଟ । ମୁଁ ବା କିପରି ତାଙ୍କ ଚକ୍ରକୁ ରୋକି ପାରିବି ?"

ଦୁର୍ବାସା ସେଠୁ ଯାଇ ଶିବଙ୍କ ପାଖରେ ପହଞ୍ଚିଲେ ଓ ତାଙ୍କ ଚରଣରେ ପତିତ ହୋଇ ତାଙ୍କୁ ରକ୍ଷା କରିବା ପାଇଁ ପ୍ରାର୍ଥନା କଲେ ।

ଶିବଙ୍କର ଧ୍ୟାନ ଭଙ୍ଗ ହେଲା ଓ ସେ ଦେଖିଲେ ଦୁର୍ବାସାଙ୍କ ପଛରେ ଆସୁଛି ସୁଦର୍ଶନ ଚକ୍ର । ସେ କହିଲେ, "ଇଏ ତ ବିଷ୍ଣୁଙ୍କ ଚକ୍ର ତୁମକୁ ମାରିବାକୁ ବୋଧହୁଏ ଆସୁଛି । ତାଙ୍କ ଚକ୍ରକୁ ତାଙ୍କ ବ୍ୟତୀତ ଆଉ କିଏ ରୋକି ପାରିବ ? ଏବେ କେବଳ ଶ୍ରୀବିଷ୍ଣୁହିଁ ତୁମକୁ ରକ୍ଷା କରି ପାରିବେ ।"

ଦୁର୍ବାସାଙ୍କର ଅହଂକାର ଭାଙ୍ଗି ପଡୁଥାଏ । ତାଙ୍କ ତପସ୍ୟାର ସମସ୍ତ ଶକ୍ତି ନଷ୍ଟ ହୋଇ ସାରିଥାଏ । ଏବେ ସେ ନିହାତି ଦୁର୍ବଳ ଓ ଅସହାୟ ମନେ କରୁଥା'ନ୍ତି । ଯେତେବେଳେ ବ୍ରହ୍ମା ଓ ଶିବ ତାଙ୍କୁ ରକ୍ଷା କରିପାରିଲେ ନାହିଁ ସେତେବେଳେ ସେ ଶ୍ରୀବିଷ୍ଣୁଙ୍କର ଶରଣ ପଶିଲେ ।



ତାଙ୍କୁ ଦେଖି ବିଷ୍ଣୁ କହିଲେ, "ମୁଁ ଅନେକ ଦିନ ପୂର୍ବରୁହିଁ ମୋର ଚକ୍ରକୁ ଅମ୍ବରୀଷଙ୍କୁ ରକ୍ଷା କରିବା ପାଇଁ ନିଯୁକ୍ତ କରିଥିଲି । ଏବେ ତ ମୋ ଚକ୍ର ତାଙ୍କର ଆଜ୍ଞାହିଁ ପାଳନ କରିବ । ମୁଁ ତୁମମାନଙ୍କ ଝଗଡ଼ା ମଝିରେ ପଶିବାକୁ ଚାହୁଁନାହିଁ । ତମେ ଶିଘ୍ର ଯାଇ ଅମ୍ବରୀଷଙ୍କୁହିଁ ପ୍ରାର୍ଥନା କର । ସେ ତୁମର ଜୀବନ ରକ୍ଷା କରିବେ ।" ବିଷ୍ଣୁ ମଧ୍ୟ ତାଙ୍କୁ ରକ୍ଷା କରିପାରିବେ ନାହିଁ ବୋଲି କହିଲେ ।

ବହୁତ ସାହସ ସଞ୍ଚୟ କରି ଦୁର୍ବାସା ବିଷ୍ଣୁଙ୍କ ନିକଟକୁ ଆସିଥିଲେ । କିନ୍ତୁ ସେଠାରେ ନିରାଶ ହେବା ପରେ କେଉଁ ମୁହଁ ନେଇ ସେ ପୁଣି ରାଜା ଅମ୍ବରୀଷଙ୍କ ପାଖକୁ ଯିବେ ? କିନ୍ତୁ ପ୍ରାଣରକ୍ଷା କରିବାକୁ ଆଉ କୌଣସି ଉପାୟ ନଥିଲା । ଚକ୍ର ତାଙ୍କ ପଛେ ପଛେ ଘୂରୁଥାଏ । ତ୍ରିଲୋକର କର୍ତ୍ତା ମଧ୍ୟ ତାଙ୍କୁ ରକ୍ଷା କରିବାରେ ଅସମର୍ଥ ହେଲେ । ଏସବୁ ଘଟିବା ମାନେ ତାଙ୍କର ସମସ୍ତ ଅହଂକାର ଚୂର୍ଣ୍ଣ ହେଲା ଓ ସେ ନିଜକୁ କ୍ଷୁଦ୍ରାଦପି କ୍ଷୁଦ୍ର ଏକ ପ୍ରାଣୀ ବୋଲି ଜ୍ଞାନ କଲେ ।

ଗର୍ବ ଭାଙ୍ଗି ଯିବାରୁ ଦୁର୍ବାସା ଅମ୍ବରୀଷଙ୍କ ଶରଣ ନେବାରେ ଆଉ କିଛି ବାଧା ରହିଲା ନାହିଁ । ସେ ଅମ୍ବରୀଷଙ୍କ ପାଖକୁ ଯାଇ ନିଜର ପ୍ରାଣଭିକ୍ଷା କଲେ । ଏହାପରେ ସୁଦର୍ଶନ ଚକ୍ର ଆପେ ଆପେ ଅଦୃଶ୍ୟ ହୋଇଗଲା । ଏହି ଘଟଣା ପରେ ଅମ୍ବରୀଷଙ୍କୁ ବିଷ୍ଣୁଙ୍କର ପରମ ଭକ୍ତ ବୋଲି ସମସ୍ତେ ଜାଣିଲେ ।"

ଅମ୍ବରୀଷ ଉପାଖ୍ୟାନ ପରେ ସୂତମୁନି ସୂର୍ଯ୍ୟବଂଶୀ ରାଜାମାନଙ୍କ ଗୁଣ ବର୍ଣ୍ଣନା କରୁଥା'ନ୍ତି । ସେ କହିଲେ ସେମାନଙ୍କ ମଧ୍ୟରେ ଗାଧି ଥିଲେ ଜଣେ ପ୍ରତାପଶାଳୀ ରାଜା । ବିଶ୍ୱାମିତ୍ର ଥିଲେ ତାଙ୍କର ପୁତ୍ର । ସେ କୃଶାଶ୍ୱଙ୍କଠାରୁ ଧନୁର୍ବିଦ୍ୟା ଶିଖିଥିଲେ ଓ ନିଜ ତପସ୍ୟା ବଳରେ ଅନେକ ଦିବ୍ୟାସ୍ତ୍ରଙ୍କୁ ସେ ଆୟତ୍ତରେ ରଖିଥିଲେ । ଅସ୍ତ୍ରବିଦ୍ୟାରେ ସେ ଥିଲେ ପ୍ରବୀଣ ।

ରାଜା ହେବା ପରେ ସେ ଥରେ ତାଙ୍କର ସୈନ୍ୟସାମନ୍ତ ନେଇ ପାରିଧିକୁ ଯାଇଥା'ନ୍ତି । ଫେରିବା ବାଟରେ ସେ ବଶିଷ୍ଠଙ୍କ ଆଶ୍ରମକୁ

ଗଲେ । ସେଠାରେ ବଶିଷ୍ଠ ତାଙ୍କ କାମଧେନୁ ଦ୍ୱାରା ରାଜା ଓ ତାଙ୍କ ଲୋକମାନଙ୍କ ପାଇଁ ଖାଦ୍ୟ ସୃଷ୍ଟି କରାଇ ଅତିଥି ସତ୍କାର କଲେ । କାମଧେନୁର ସେହି ଅଦ୍ଭୁତ ଶକ୍ତି ଦେଖି ବିଶ୍ୱାମିତ୍ର ବଶିଷ୍ଠଙ୍କୁ ଅନୁରୋଧ କରି କହିଲେ, "ଆପଣ ଏଇଟି ମୋତେ ଦେଇ ଦିଅନ୍ତୁ, ପରିବର୍ତ୍ତରେ ମୁଁ ଦଶଲକ୍ଷ ଗାଈ ଦେବି ।"

କିନ୍ତୁ ବଶିଷ୍ଠ ସେ ଅନୁରୋଧକୁ ଅସ୍ୱୀକାର କଲେ । ବିଶ୍ୱାମିତ୍ର କ୍ରୋଧାନ୍ୱିତ ହୋଇ ନିଜ ସୈନ୍ୟମାନଙ୍କୁ ଆଦେଶ ଦେଲେ କାମଧେନୁକୁ ବଳ ପ୍ରୟୋଗ କରି ନେଇ ଯିବାକୁ ।

ସେତେବେଳେ ଆଉ ଏକ ବିଚିତ୍ର ଘଟଣା ଘଟିଲା । କାମଧେନୁର ଶରୀରରୁ ଅସଂଖ୍ୟ ସୈନିକ ସୃଷ୍ଟି ହେଲେ । ସେମାନେ ବିଶ୍ୱାମିତ୍ରଙ୍କ ସୈନ୍ୟଙ୍କୁ ମାରିଦେଲେ । ବିଶ୍ୱାମିତ୍ର ଆହୁରି ଆଶ୍ଚର୍ଯ୍ୟ ହୋଇ ଭାବିଲେ ଯେ ଯୋଗଶକ୍ତି ତୁଳନାରେ ରାଜାର ଶକ୍ତି କେତେ ତୁଚ୍ଛ । ଏକଥା ଉପଲବ୍ଧି କରି ସେ ରାଜ୍ୟ ତ୍ୟାଗ କରି ଘୋର ତପସ୍ୟା କଲେ ଓ ଅବଶେଷରେ ବଶିଷ୍ଠଙ୍କ ପରି ବ୍ରହ୍ମର୍ଷି ହେଲେ ।

ପରେ ସେ ନିଜ ଆଶ୍ରମରେ ଯଜ୍ଞ କରୁଥା'ନ୍ତି । ସେତେବେଳେ ରାବଣର ପ୍ରରୋଚନାରେ ବହୁ ଅନେକ ରାକ୍ଷସ ଆସି ତାଙ୍କର ଯଜ୍ଞ ଓ ତପସ୍ୟାରେ ବାଧା ସୃଷ୍ଟି କରୁଥା'ନ୍ତି । ସେ ଯଜ୍ଞରେ ଦୀକ୍ଷିତ ହୋଇଥିବାରୁ ବ୍ରହ୍ମଶକ୍ତି ରାକ୍ଷସମାନଙ୍କ ଉପରେ ପ୍ରୟୋଗ କରିପାରୁ ନଥା'ନ୍ତି । ପରେ ଯୋଗବଳରେ ସେ ଜାଣି ପାରିଲେ ରାକ୍ଷସମାନଙ୍କୁ ସଂହାର କରିବାକୁ ଶ୍ରୀବିଷ୍ଣୁ ରାମ ରୂପରେ ଅଯୋଧ୍ୟା ସୂର୍ଯ୍ୟ ବଂଶରେ ଜନ୍ମ ନେଇଛନ୍ତି । ସେ ଏକଥା ଜାଣି ଅତ୍ୟନ୍ତ ଆନନ୍ଦ ହୋଇ ଅଯୋଧ୍ୟା ଅଭିମୁଖରେ ଚାଲିଲେ । ତାଙ୍କର ସମସ୍ତ ଅସ୍ତ୍ରଶସ୍ତ୍ର ସମ୍ପର୍କୀୟ ବିଦ୍ୟା ସେ ରାମଙ୍କୁ ଓ ଲକ୍ଷ୍ମଣଙ୍କୁ ଶିକ୍ଷା ଦେଇଥିଲେ । ସେ ଥିଲେ ରାମ ଲକ୍ଷ୍ମଣଙ୍କର ଅସ୍ତ୍ରଗୁରୁ । ପରେ ତାଙ୍କ ସହିତ ରାମ ଲକ୍ଷ୍ମଣ ବଣକୁ ଆସି ଅନେକ ଅସୁରଙ୍କୁ ନିହତ କରିଥିଲେ ।





# ପରମାର୍ଥ ବିଦ୍ୟା

ଗୋଟିଏ ଗ୍ରାମରେ ବିଜୟ ନାମରେ ଏକ ଲମ୍ବାଚୌଡ଼ା ଓ ଭଲ ସ୍ୱାସ୍ଥ୍ୟ ଥିବା ଯୁବକ ଥିଲା । ଯେତେଦିନ ମା' ବାପା ଜୀବିତ ଥିଲେ ତା'ର କୌଣସି ଚିନ୍ତା ନଥିଲା । ହଠାତ୍ ସେମାନେ ମରିଯିବା ପରେ ସେ ଉପଲବ୍ଧି କଲା ଯେ ଧନ ଅର୍ଜ୍ଜନ କରିବା ଏକ ସମସ୍ୟା । କ୍ରମେ ଘରେ ଥିବା ଧନ ସରିଥାଏ । ବିଜୟ ସବୁ ପ୍ରକାର ବେପାର କଲା କିନ୍ତୁ ପାରିଲା ନାହିଁ । ଅବଶେଷରେ ଗ୍ରାମ ସୀମାନ୍ତରେ ରହୁଥିବା ଜଣେ ସାଧୁଙ୍କ ପାଖକୁ ସେ ଗଲା ।

ସାଧୁ ଧ୍ୟାନରେ ବସିଥା'ନ୍ତି । ସେ ଯାଇ ସାଧୁଙ୍କଠାରୁ କିଛି ଦୂରରେ ହାତ ଯୋଡ଼ି ଠିଆ ହେଲା । ଧ୍ୟାନ ଭାଙ୍ଗୁ ଭାଙ୍ଗୁ ସାଧୁଙ୍କ ଆଖି ପଡ଼ିଲା ବିଜୟ ଉପରେ । ସେ ପଚାରିଲେ, "ତମେ କ'ଣ ଚାହଁ ?"

ବିଜୟ ସାଧୁଙ୍କୁ ପ୍ରଣାମ କରି ନିଜର ଦୁଃଖ ସବୁ ସାଧୁଙ୍କୁ କହିଲା । ସାଧୁ କିଛି ସମୟ ମୌନ ରହି କହିଲେ, "ବତ୍ସ, ମୁଁ ତୁମକୁ ଧନ ଦେବି ନାହିଁ, କିନ୍ତୁ ଜୀବିକା ନିର୍ବାହ ପାଇଁ ଦରକାର ଧନ ଅର୍ଜ୍ଜନ କରିବା ପାଇଁ ତୁମକୁ କିଛି ବିଦ୍ୟା ଶିଖାଇ ଦେବି ।"

ବିଜୟ କହିଲା, "ଅନ୍ଧ ମାଗେ କ'ଣ ? ଆଖି ଦୁଇଟି ମାତ୍ର । ବେଶ୍ । ସେତିକି କୃପା ମୋ ପାଇଁ ଯଥେଷ୍ଟ ।"

"ମୁଁ ତୁମକୁ ଏପରି ଏକ ବିଦ୍ୟା ଶିକ୍ଷା ଦେବି ଯଦ୍ୱାରା ମାଟିତଳେ ଥିବା ଧନ ତୁମକୁ ଦେଖାଯିବ । କିନ୍ତୁ ସ୍ୱାର୍ଥ ପାଇଁ ଏ ବିଦ୍ୟାକୁ ଉପଯୋଗ କଲେ ସେ ଶକ୍ତି ତୁମଠାରୁ ଦୂରେଇ ଯିବ ।" ସାଧୁ କହିଲେ ।

ତା'ପରେ ସେ କମଣ୍ଡଳୁରୁ କିଛି ପାଣି ତା' ଉପରେ ପକାଇଲେ ଓ କିଛି ମନ୍ତ୍ର ବୋଲି



ଦଣ୍ଡଟିରେ ତା'ର ଆଖି ସ୍ପର୍ଶ କଲେ । ଏବେ ସେ କହିଲେ, "ବତ୍ସ, କହିପାରିବ ବର୍ତ୍ତମାନ ତୁମେ ଯେଉଁଠି ଠିଆ ହୋଇଛ ତୁମ ପାଦତଳେ ଭୂଗର୍ଭରେ କ'ଣ ଅଛି ?"

ବିଜୟ ତା' ପାଦ ପାଖରେ ଥିବା ଜମିକୁ ଦେଖି କହିଲା, "ଏଠାରେ ମାଟିର କେତେକ ସ୍ତର ରହିଛି ତା'ପରେ ଜଳ ରହିଛି ।"

"ଏବେ ତୁମେ ଯାଇପାର । କିନ୍ତୁ ଭଲଭାବରେ ମନେରଖ ଯେ ସ୍ୱାର୍ଥ ପାଇଁ କେବେ ଏ ବିଦ୍ୟା ପ୍ରୟୋଗ କରିବ ନାହିଁ ।" ସାଧୁବାବା କହିଲେ ।

ବିଜୟ କୃତଜ୍ଞତା ପୂର୍ବକ ସାଧୁଙ୍କ ଚରଣସ୍ପର୍ଶ କରି ପ୍ରଣାମ କଲା ଓ କୌଣସି ଦୂର ସ୍ଥାନକୁ ଯିବା ଉଦ୍ଦେଶ୍ୟରେ ବାହାରିଲା । ଯାଉ ଯାଉ ଗୋଟିଏ ଜଙ୍ଗଲ ପଡ଼ିଲା । ଦେଖିଲା ଦଳେ ଲୋକ ଜଙ୍ଗଲ ଭିତରୁ ବାହାରି କୁଆଡ଼େ ଗ୍ଭଲିଛନ୍ତି । ହଠାତ୍ ବିଜୟ ପାଟିକଲା, "ରହିଯା'ନ୍ତୁ, ଆଗକୁ ଯାଆନ୍ତୁ ନାହିଁ ବିପଦ ।"

ସେମାନେ ସେଇଠି ଅଟକିଗଲେ କିନ୍ତୁ କିଛି ବୁଝିପାରିଲେ ନାହିଁ । ବିଜୟ ତାଙ୍କୁ ବୁଝାଇ ଦେଲା, "ଆଉ ଟିକିଏ ଆଗକୁ ଯାଇଥିଲେ ମାଟିତଳେ ପଙ୍କ ରହିଛି ଆପଣ-ମାନେ ଶୁଖିଲା ମାଟି ଭାବି ସେଇଠି ପାଦ ଦେଇ ପଙ୍କରେ ବୁଡ଼ିଯା'ନ୍ତେ ।"

ସେମାନେ ଆଶୁବିପଦ କଥା ଜାଣି ବିଜୟକୁ କୃତଜ୍ଞତା ଜଣାଇଲେ । କିନ୍ତୁ ଜଣେ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲା, "ତମେ କପରି ଏସବୁ ଜାଣି ପାରିଲ ?"

"ସବୁକଥା କ'ଣ ସମସ୍ତେ ଜାଣିପାରିବେ ? ସେଇଟା କେବଳ ହୋଇଥାଏ କୌଣସି ଋଷିଙ୍କ କୃପାରୁ ।" ବିଜୟ କହିଲା । କିନ୍ତୁ ଉକ୍ତ ବ୍ୟକ୍ତିଟି ବିଜୟ କଥାରେ ଅବିଶ୍ୱାସ କରି ତା' ସହଯାତ୍ରୀମାନଙ୍କୁ କହିଲା, "ବାଜେ କଥା । ଆଗରେ କିଛି ନାହିଁ ଆସ ଦେଖିବା ।" କହି ସେ ଆଗେଇଗଲା । ଟିକିଏ ଆଗକୁ ଯାଇ ସେ ପଙ୍କ ଭିତରେ ଖସି ପଡ଼ିଲା । ଅନ୍ୟ ଯାତ୍ରୀମାନେ କୌଣସି ମତେ ତାକୁ ଦଉଡ଼ି ଧରାଇ ଉଠାଇଲେ । ପରେ ସମସ୍ତେ ବିଜୟକୁ ଧନ୍ୟବାଦ ଦେଲେ ଓ କିଛି ମୋହର ଦେଇ ଗ୍ଭଲିଗଲେ ।

ତା'ପରେ ବିଜୟ ସେ ଜଙ୍ଗଲ ପାରି ହୋଇ ଗୋଟିଏ ଗ୍ରାମରେ ଯାଇ ପହଞ୍ଚିଲା । ରାସ୍ତା କଡରେ ଗୋଟିଏ କୁଟୀର ମଧ୍ୟରୁ ଶିଶୁର କ୍ରନ୍ଦନ ଧ୍ୱନି ବିଜୟ ଶୁଣି ପାରିଲା । ଆଉ ଛୁଆଟିର ମା' କାନ୍ଦି କାନ୍ଦି କହୁଥାଏ, "ଆହା କେତେଦିନ ହେବ ମୋ ଛୁଆ ଭୋକରେ ଅଛି । ମୁଁ କ'ଣ ଏବେ ଦେବି ।"

ବିଜୟ ଏକଥା ଶୁଣି ସେହି ଛୋଟ ଘରେ ପଶି ଯାତ୍ରୀମାନଙ୍କଠାରୁ ପାଇଥିବା ରୂପାର ମୁଦ୍ରା ସବୁ ସେହି ସ୍ତ୍ରୀ ଲୋକକୁ ଦେଲା । ଦେଇ ଫେରି ଆସିବା ବେଳେ ପ୍ରାୟ ଚିତ୍କାର କରି କହି ଉଠିଲା, "ଆରେ ତୁମ ଘରେ ତ ନିଜେ ଲକ୍ଷ୍ମୀ ଅଛନ୍ତି, ଆଉ ତୁମେ ଛୁଆକୁ ଖାଇବାକୁ ଦେଇ ପାରୁନ ?"

ଆଖିରୁ ଲୁହ ପୋଛୁ ପୋଛୁ ସ୍ତ୍ରୀ ଲୋକଟି କହିଲା, "ଆମର ଦାରିଦ୍ର୍ୟ ଉପରେ ଏପରି କଥା କାହିଁକି କହୁଛ ଭାଇ ?"

"ଭଉଣୀ ମୁଁ ସତ କଥା କହୁଛି । ଏବେ ତୁମ ଦୁଆର ବନ୍ଧ ତଳେ ଖୋଳି ଦେଖ ଗୋଟିଏ କଂସା ପାତ୍ରରେ ଅନେକ ସୁନା ମୋହର ଅଛି । ଏବେ ତ ତମେ ସୁନାର ତାଟିଆରେ ଛୁଆକୁ ଦୁଧଭାତ ଖୁଆଇ ପାରିବ ।" ବିଜୟ ବିଶ୍ୱାସ ଦେଇ କହିଲା ।

ସ୍ତ୍ରୀ ଲୋକଟି ବିଜୟର କଥା ପରଖିବା ପାଇଁ ସେଠାରେ ଖୋଳି ଦେଖିଲା ସତରେ ସୁନା ମୋହର ପୂର୍ଣ୍ଣ କଂସାପାତ୍ର ଟିଏ ବାହାରିଲା । ସ୍ତ୍ରୀ ଲୋକଟି ଅତି ଆନନ୍ଦ ହୋଇଗଲା ଓ ସେହି ସ୍ୱର୍ଣ୍ଣମୁଦ୍ରାରୁ କିଛି ବିଜୟକୁ ଦେଲା ।





ଏଇପରି ଭାବରେ ବିଜୟ ଗ୍ରାମରୁ ଗ୍ରାମାନ୍ତର ବୁଲି ବୁଲି ଲୋକମାନଙ୍କୁ ସେମାନଙ୍କ ଧନ ସମ୍ପତ୍ତି ପାଇବାରେ ସାହାଯ୍ୟ କରୁଥିଲା । ସେଥିରୁ ଯାହା ପାରିଶ୍ରମିକ ମିଳୁଥିଲା ସେଥିରେ ସେ ଆନନ୍ଦରେ ଚଳୁଥାଏ ।

ଥରେ ଗୋଟିଏ ଗ୍ରାମ ପାଖରେ ଥିବା ଚାଷ ଜମିରେ ସେ ବୁଲି ବୁଲି ଗୋଟିଏ ସୁନା ମୋହର ଭରା ପାତ୍ର ହାତେ ଗଭୀର ମାଟି ତଳେ ଥିବାର ଜାଣି ପାରିଲା । ସେ ଜମି ଥିଲା ଦୁଇ ଭାଇଙ୍କର । ସେମାନେ ସେତକ ଜମିରୁ ଯାହା ପା'ନ୍ତି ବହୁ କଷ୍ଟରେ କୌଣସି ମତେ ଚଳିଯା'ନ୍ତି । ଦୁଇ ଭାଇଙ୍କ ଭିତରେ ଖୁବ୍ ଭଲ ସମ୍ପର୍କ ଥାଏ । ବିଜୟ ଦେଖିଲା ଦୂରରେ ସାନଭାଇଟି ହଳ ବୁଲାଉଛି । ତେଣୁ ତାକୁହିଁ ପାଖକୁ ଡାକି ପୋତା ସମ୍ପତ୍ତି ଥିବାର ଖବର ଦେଇ ଚାଲିଗଲା ।

ସାନଭାଇ ମନରେ ଟିକିଏ ଲୋଭ ହୋଇଗଲା । ସେ ମନେ ମନେ ଭାବିଲା କି ରାତିରେ ସମସ୍ତେ ଶୋଇ ପଡ଼ିଲେ ସେ ଲୁଚି ଲୁଚି ଯାଇ ଖୋଳିବ । ନହେଲେ ବଡ଼ଭାଇ ଜାଣିନେବ । ରାତି ହେବାରୁ ସାନଭାଇ କୋଡ଼କୋଦାଳ ଧରି ଚାଲିଗଲା । ବଡ଼ଭାଇର ଟିକିଏ ସନ୍ଦେହ ହେଲା । ସେ ମଧ୍ୟ ଲୁଚି ଲୁଚି ସାନଭାଇର ପିଛା ନେଲା ।

ବହୁ ପରିଶ୍ରମ ପରେ ଯେତେବେଳେ ସାନଭାଇ ସୁନା ମୋହର ଭରା ପାତ୍ରଟି ପାଇଲା, ତତ୍‌କ୍ଷଣାତ୍ ବଡ଼ଭାଇ ଆସି ତା'ର ଭାଗ ମାଗିଲା । ସାନଭାଇ ଦବାପାଇଁ ନାରାଜ ହେଲା । ଦୁହେଁ ଝଗଡ଼ା କଲେ ଓ ଶେଷରେ ମରାମରି ହୋଇ ଦୁହେଁ ବେହୋସ ହୋଇ ପଡ଼ିଲେ । ସକାଳ ହେବାରୁ ଗ୍ରାମବାସୀମାନେ ଦୁହିଁଙ୍କୁ ସେବାଯତ୍ନ କରି ବହୁତ କଷ୍ଟରେ ସଚେତନ କରାଇଲେ । ବିଜୟ ପାଖ ଗ୍ରାମରେ ଥାଇ ଏକଥା ଶୁଣି ବହୁତ ଦୁଃଖିତ ହେଲା । ସେ ଭାବିବାକୁ ଲାଗିଲା ଯେ ଏପରି ବିଦ୍ୟାର କି ମୂଲ୍ୟ ଯଦ୍ୱାରା ପରସ୍ପର ମଧ୍ୟରେ ବିଦ୍ୱେଷ ସୃଷ୍ଟି ହେଉଛି । କାରଣ ସେ ଚାହୁଁ ନଥିଲା କି ତା'ର ବିଦ୍ୟା ଦ୍ୱାରା ଅନ୍ୟର ହାନୀ ହେଉ ।

ସେ ଭାବିଲା ଆଗରୁ ଦୁଇଭାଇ କେତେ ଆନନ୍ଦରେ ରହୁଥିଲେ । ଯଦି ସେ ସାନଭାଇଙ୍କୁ ସୁନା ମୋହର କଥା କହି ନଥା'ନ୍ତା ତେବେ ଏତେ ଗୋଳମାଳ ଆଦୌ ହୋଇ ନଥା'ନ୍ତା । ବିଜୟର ନିଜ ବିଦ୍ୟା ପ୍ରତି ଘୃଣା ଆସିଲା । ସେ କ'ଣ କରିବ ବୋଲି ଭାବିପାରୁ ନଥିଲା ।

ପରେ ସେ ନିଜ ଗ୍ରାମକୁ ଫେରି ଯାଇ ସାଧୁଙ୍କ ପାଖରେ ସବୁ କଥା ନିବେଦନ କଲା । ସାଧୁ କିଛି ସମୟ ପାଇଁ ଆଖି ବନ୍ଦ କଲେ । ତା'ପରେ ଆଖି ଖୋଲି କହିଲେ, "ବତ୍ସ, ତୁ ନିଜର ଜୀବିକା ନିର୍ବାହ ପାଇଁ ଏପର୍ଯ୍ୟନ୍ତ ମଧ୍ୟ କୌଣସି କାର୍ଯ୍ୟ କଲୁନାହିଁ । ଏହି ଅଲୌକିକ ବିଦ୍ୟାରୁ ମିଳୁଥିବା ଧନରୁହିଁ ରହୁଛୁ । ସେଥିପାଇଁ ମନରେ ଅଶାନ୍ତି ଦେଖା ଦେଇଛି ।"

"ବାପା, ମୁଁ ଏହି ବିଦ୍ୟା ଦ୍ୱାରା ଜୀବିକା ନିର୍ବାହ କରିବାକୁ ଚାହୁଁନାହିଁ । କିନ୍ତୁ କି କାମ କରିବି ସେକଥା ମଧ୍ୟ ମୋତେ ଜଣା ନାହିଁ ।" ବିଜୟ କହିଲା ।

"ତମେ ଗୋଟିଏ କାମ କର । ନିଜ ସ୍ୱାର୍ଥରେ ଲଗିଲା ଭଳି କିଛି ଧନ ଏହି ବିଦ୍ୟା ଦ୍ୱାରା ଅର୍ଜନ କର । ତାହାହେଲେ ଏହି ବିଦ୍ୟାଟି ଆପେ ଆପେ ତୁମ ହାତରୁ ଚାଲିଯିବ । ଏବେ ଦ୍ୱିତୀୟ କଥା ତୁମ ଜୀବିକା ନିର୍ବାହର ସତ୍‌ପନ୍ଥା । ଏହି ବିଦ୍ୟା ପ୍ରୟୋଗ କରି ଯେଉଁ ଧନ ଲଭ କରିବ ସେଇଥିରେ ବ୍ୟବସାୟଟିଏ ଆରମ୍ଭ କର ଓ କିଛି ଜମି କିଣି ପକାଅ ।"

ବିଜୟ ସାଧୁଙ୍କ ଆଶିର୍ବାଦ ନେଇ ପ୍ରସନ୍ନତା ପୂର୍ବକ ଚାଲିଗଲା । ଗାଁ ମୁଣ୍ଡରେ ଥିବା ଜମି ଗୁଡ଼ିକ ଉପରେ ସେ ବୁଲି ଦେଖିଲା । ହଠାତ୍ ସେ ଜାଣିପାରିଲା ତା' ପାଦତଳ ମାଟିତଳେ ସୁନା ମୋହର ପୂର୍ଣ୍ଣ ଗରା ଅଛି । ସେ ସେସବୁକୁ ନେଇ ଛୋଟ ଛୋଟ ବ୍ୟବସାୟ ଆରମ୍ଭ କଲା । କିଛିଦିନ ପରେ ସେ ଅନୁଭବ କଲା ଯେ ପରିଶ୍ରମ ସବୁଠାରୁ ବଳି ଅଲୌକିକ ବିଦ୍ୟା । କାରଣ ଏହା କାହାର କ୍ଷତି କରିବ ନାହିଁ ।



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ. ୫୦

ପୁରସ୍କୃତ ପରିଚୟୋକ୍ତି ଫେବ୍ରୁଆରି ୧୯୮୪ ସଂଖ୍ୟାରେ ପ୍ରକାଶ ପାଇବ


Devidas Kssbekar


B. Prasad

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଚାରି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଡିସେମ୍ବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ।
★ ପରିଚୟୋକ୍ତି ସହ ପ୍ରେରକଙ୍କର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

---

## ଅକ୍ଟୋବର ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ମୁଁ ଖାଇବ କି ନାହିଁ!
ଦ୍ୱିତୀୟ ଚିତ୍ର : ମୁଁ ଛୁଇଁବ କି ନାହିଁ!!

ପୁରସ୍କାର ବିଜୟୀ : ସୁରେନ୍ଦ୍ର ଆଚାର୍ଯ୍ୟ, ଭୁବନେଶ୍ୱର।
ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

Anil Kumar Panigrahi

## ପ୍ରଶ୍ନମାଳାର ଉତ୍ତର

୧. କାଶ୍ୟପ (ଋଷି) ମୀର ଶଙ୍କରୁ। ୨. ପ୍ରାଚୀନ କଳିଙ୍ଗ ସାମ୍ରାଜ୍ୟର ସିଂହପୁର ସହର ନାମାନୁସାରେ। ୩. ବାଲେଶ୍ୱର। ୪. ଖାରବେଳ। ୫. ମେଘାସନ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.

# ମାଲ୍‌ଟୋଭା ଦଳ –
# ସବୁବେଳେ ଧୁମଧୁମ, କଷ୍ଟ ଯେ କରିବେ କିଏ ଜାଣେ!

**ସ୍ୱାଭାବିକ ଭାବେ ପାଚିଥିବା ଗହମ ଓ ବାର୍ଲିର ମଲ୍ଟ**

ପଂଜାବରୁ ଆସେ ଗହମ ଓ ବାର୍ଲି ଓ ତାହା ପୁଷ୍ଟିକର ମଲ୍ଟ ଭାବେ ତିଆରି କରଯାଏ ମାଲଟୋଭା ପ୍ଲାଣ୍ଟରେ । ଅତ୍ୟାବଶ୍ୟକ ଖଣିଜସାର ଓ ଭିଟାମିନ 'B'ରେ ପରିପୂର୍ଣ୍ଣ ମାଲଟୋଭା ହେଉଛି ପୂର୍ବରୁ ସୁପାଚ୍ୟ-ଖାଦ୍ୟ ଓ ଏହା ସହଜରେ ଶରୀରରେ ମିଶିଯାଏ ।

**ବିଶୁଦ୍ଧ, ଘନ ଦୁଗ୍ଧ**

ମାଲଟୋଭାରେ ଯେଉଁ ଦୁଗ୍ଧାଂଶ ଅଛି ତା ଆସେ ଆମର ନିଜର ଦୁଗ୍ଧ ସଂଗ୍ରହ କେନ୍ଦ୍ରମାନଙ୍କରୁ । ୧୦୦% ବିଶୁଦ୍ଧ, ୧୦୦% ପୁଷ୍ଟିକର ।

**ରୁଚିକର କୋକୋ ସ୍ୱାଦ**

ଆମେ ବ୍ୟବହାର କରୁ ବିଦେଶରୁ ଆମଦାନି ଉତ୍କୃଷ୍ଟ କୋକୋ — ତାର କାରଣ ଆମେ ଚାହୁଁ ଆପଣ ଉତ୍ତମ ସ୍ୱାଦ ପାନ୍ତୁ ଓ ଆପଣଙ୍କୁ ପୁଷ୍ଟିକର ଗୁଣ ମିଳୁ । କୋକୋ ହୃତଶକ୍ତି ଫେରଇଆଣେ ଓ କ୍ଲାନ୍ତି ମେଣ୍ଟାଇବାରେ ସାହାଯ୍ୟ କରେ ।

**ଶକ୍ତିବର୍ଦ୍ଧକ ଚିନି**

ବିଶୁଦ୍ଧ ଧଳା ଚିନି ହେଉଛି ଚିନି ଭିତରେ ଶ୍ରେଷ୍ଠ ଚିନି, ପିଲାମାନଙ୍କର ଆବଶ୍ୟକ ହେଉଥିବା ଅତିରିକ୍ତ ଶକ୍ତି ପାଇଁ ଏହା ଅତି ପ୍ରୟୋଜନ ।

**ବିଶେଷଭାବେ ଭିଟାମିନରେ ସମୃଦ୍ଧ**

ମାଲଟୋଭା ହେଉଛି ପ୍ରୋଟିନ, କାର୍ବୋହାଇଡ୍ରେଟ, ଭିଟାମିନ ଓ ଖଣିଜସାରର ଏକ ଅପୂର୍ବ ସମ୍ମିଶ୍ରଣ । ଅତିରିକ୍ତଭାବେ ଭିଟାମିନ A, ନିଆସିନ, ଭିଟାମିନ $B_1$ ଓ ଭିଟାମିନ $D_2$ ରେ ମଧ୍ୟ ଏହାକୁ ସମୃଦ୍ଧ କରଯାଇଛି । ଏଥିରେ କୃତ୍ରିମ ସ୍ୱାଦ ନାହିଁ ।




ପିଲାମାନଙ୍କର ଦରକାର ଭଲ ସ୍ୱାସ୍ଥ୍ୟ, ବଳ ଓ ଶକ୍ତି, ଆଉ ଏ ସବୁ ତାଙ୍କୁ ମିଳେ ମାଲଟୋଭାରୁ । ଉତ୍କୃଷ୍ଟ ଗହମ, ବାର୍ଲି, ଖାଣ୍ଟି ଦୁଧ, ସମୃଦ୍ଧ କୋକୋ ଓ ଶର୍କରାର ସମସ୍ତ ଉତ୍ତମଗୁଣ ମିଶି ପରିପୂର୍ଣ୍ଣ ହୋଇ ରହିଛି ମାଲଟୋଭାରେ । ମାଲଟୋଭା ପିଲାମାନଙ୍କର ଏ ସବୁ ଉପକାର କରିଥାଏ, ତାଛଡା, ଦୁଧରେ ମିଶେଇଲେ ଏହା ଏକ ଭଲ ପାନୀୟ ହୁଏ । ଆଉ ତାର ସ୍ୱାଦ କି ଚମତକାର ।

**JIL ଜଗଜିତ ଇଣ୍ଡଷ୍ଟ୍ରୀଜ ଲିମିଟେଡ**
୧୯୮୧ ଓ ୧୯୮୨ରେ
ମୋଣ୍ଡେ (ୱାର୍ଲଡ) ସିଲେକସନ୍
ସ୍ୱର୍ଣ୍ଣପଦକ ବିଜେତା

## ଭିଟାମିନରେ ଭରପୁର ମାଲ୍‌ଟୋଭା: ସ୍ୱାସ୍ଥ୍ୟ, ବଳ ଓ ଶକ୍ତିଦାୟକ

SIMOES/